


ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ମାସ୍କେଟ୍ ଦ୍ୱୀପ୍









ବିଶ୍ୱ ସାହିତ୍ୟ ଗ୍ରନ୍ଥମାଳା

# ମାରାକଟ୍ ଡୀପ୍

[ ସାର୍ ଆର୍ଥାର୍ କୋନାନ୍ ଡୟେଲ୍ଙ୍କ
The maracot Deepର
ଓଡ଼ିଆ ରୂପାନ୍ତର । ]

ଅନୁବାଦ :
ଶ୍ରୀ ଜ୍ୟୋତିଶଚନ୍ଦ୍ର ମୋହନ ଜୋଆରଦାର
ଶ୍ରୀ ବାମାଚରଣ ମିଶ୍ର

ଗ୍ରନ୍ଥମନ୍ଦିର

ପ୍ରକାଶକ : ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨

ମୁଦ୍ରକ :
**ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟସ୍,**
ସୂତାହାଟ, କଟକ-୧

ନୂତନ ସଂସ୍କରଣ : ୨୦୧୨

ମୂଲ୍ୟ : ଟ. ୪୦.୦୦

# ଏକ

'ଷ୍ଟ୍ରାଟଫୋର୍ଡ୍' ଜାହାଜର ଅନ୍ତର୍ଦ୍ଧାନ କଥା ଅନେକଙ୍କର ସ୍ମରଣ ଥାଇପାରେ—କାରଣ ମାତ୍ର ବର୍ଷେ ଆଗର କଥା । ଗଭୀର ସମୁଦ୍ରର ତଳଦେଶ କଥା ଜାଣିବାପାଇଁ 'ଷ୍ଟ୍ରାଟଫୋର୍ଡ୍' ସମୁଦ୍ର ଯାତ୍ରା କରିଥିଲା—ଆଉ ଫେରି ନାହିଁ । ସେଇ ଅଭିଯାନର ନେତା ଥିଲେ ଡକ୍‌ଟର ମାରାକଟ୍ । ସେ ଥିଲେ ମହାପଣ୍ଡିତ । ଏହି ସମୁଦ୍ର ଯାତ୍ରାରେ ତାଙ୍କର ସାଥୀ ଥିଲେ ଜଣେ ମାକିନ୍ ପ୍ରାଣୀବିଦ୍ ମିଃ ସାଇରାସ୍ ହେଡ୍‌ଲେ । ଜାହାଜର କ୍ୟାପ୍‌ଟେନ୍ ଥିଲେ ହାଓୟି ନାମକ ଜଣେ ଅତି ସୁଦକ୍ଷ ନାବିକ । ଜାହାଜର କର୍ମଚାରୀ ଓ ମାଲ୍ଲା ମିଶି ଥିଲେ ସର୍ବମୋଟ ତେଇଶ ଜଣ । ସେମାନଙ୍କ ମଧ୍ୟରେ ଥିଲେ ଜଣେ ମାକିନ୍ ଇଞ୍ଜିନିୟର ।

ଏ ସାରା ଦଳଟି ନିରୁଦ୍ଦିଷ୍ଟ ହୋଇଥିଲା । ଜାହାଜଟିର ଯେ କି ଦଶା ହେଲା କେହି ଜାଣିପାରିଲେ ନାହିଁ । କେବଳ ନରଓ୍ୱେର ଗୋଟିଏ ଅଝାଲ ଜାହାଜର କ୍ୟାପ୍‌ଟେନ୍ କୁହନ୍ତି ଯେ 'ଷ୍ଟ୍ରାଟ୍‌ଫୋର୍ଡ୍' ଭଳି ଗୋଟିଏ ଜାହାଜକୁ ସେମାନେ ଗତବର୍ଷ ଆଶ୍ୱିନର ଝଡ଼ରେ ବୁଡ଼ିଯିବାର ଦେଖିଛନ୍ତି । ସେମାନଙ୍କ କହିବା ଅନୁସାରେ ସେ ସ୍ଥାନକୁ ଯିବାରୁ ଦେଖାଗଲା କେତେ ଗୁଡ଼ିଏ ଜିନିଷ ଭାସୁଛି, ଯଥା—'ଷ୍ଟାଟ୍‌ଫୋର୍ଡ୍' ନାମ ଲେଖା ଗୋଟିଏ ଜୀବନରକ୍ଷୀ ନୌକା, ଗୋଟାଏ ବୟା, ଜାହାଜ ଡେକ୍‌ର ଗୋଟିଏ ଭଙ୍ଗା ଅଂଶ । ଏ ସବୁ ଜିନିଷ ଦେଖି ଏବଂ ପରେ ସୁଦ୍ଧା ଷ୍ଟାଟ୍‌ଫୋର୍ଡ୍‌ର କୌଣସି ଖବର ନ ମିଳିବାରୁ ସମସ୍ତେ ଧରିନେଇଥିଲେ ଯେ ଜାହାଜଟି ତୋଫାନରେ ବୁଡ଼ିଯାଇଚି । ଏହା ବ୍ୟତୀତ ସେ ସମୟରେ ଅନେକ ଜାହାଜର ବେତାର ଯନ୍ତ୍ରରେ ଗୋଟିଏ ଅଦ୍ଭୁତ ବେତାର-ବାର୍ତ୍ତା ଶୁଣିବାକୁ ମିଳିଥିଲା । ସେ ବାର୍ତ୍ତାର କେତେକ ଅଂଶ ଥିଲା ଦୁର୍ବୋଧ । କିନ୍ତୁ ଷ୍ଟ୍ରାଟ୍‌ଫୋର୍ଡ୍ ଯେ ଆଉ କଦାପି ଫେରିଆସିବ ନାହିଁ ଏକଥା ସେ ବାର୍ତ୍ତାରୁ ସ୍ପଷ୍ଟ ବୁଝାପଡୁଥିଲା । ସେ ବାର୍ତ୍ତାଟି କ'ଣ ପରେ କହିବି ।

ପ୍ରଫେସର ମାରାକଟ୍ ଥିଲେ ଅଦ୍ଭୁତ ଭାବରେ ଗୋପନତାପ୍ରିୟ—ତେଣୁ ଖବରକାଗଜର ଲୋକେ ଥିଲେ ତାଙ୍କର ଚକ୍ଷୁଶୂଳ । ଏ ଅଭିଯାନ ବିଷୟରେ କୌଣସି କଥା ସେମାନଙ୍କୁ କହିବା ଦୂରେ ଥାଉ, ଯେତୋଟି ସପ୍ତାହ ଜାହାଜଟି ଆଲବର୍ଟ ଡକ୍‌ରେ ଲଙ୍ଗର ପକାଇ ରହିଥିଲା ତା' ଭିତରେ କୌଣସି ସାମ୍ବାଦିକକୁ ଜାହାଜ ଭିତରକୁ ଛାଡ଼ିବାକୁ ସେ ମନାକରି ଦେଇଥିଲେ । ଫଳରେ ଜହାଜଟି ବିଷୟରେ ନାନା ଗୁଜବ ଶୁଣାଯାଉଥାଏ— ଯଥା ଜାହାଜଟି ଗଭୀର ସମୁଦ୍ର ଯାତ୍ରା ଉପଯୋଗୀ କରି ତିଆରି ହୋଇଛି, ଆଉ ତା' ଭିତରେ କୁଆଡ଼େ ନାନା ଅଦ୍ଭୁତ କଳକବ୍‌ଜା ଖଞ୍ଜା ହୋଇଛି,

ଇତ୍ୟାଦି । ଯେଉଁ ଜାହାଜ କାରଖାନାରେ ଜାହାଜଟି ତିଆରି ହୋଇଥିଲା ସେଠାରୁ ପରେ ଖବର ନେବାରେ ଜଣାପଡ଼ିଥିଲା ଯେ କଥାଗୁଡ଼ିକ ସତ । ଷ୍ଟ୍ରାଟଫୋର୍ଡ଼ ଜାହାଜର କି ଦଶା ହେଲା ସେ ବିଷୟରେ ଚାରୋଟି ଲେଖା ମିଳିଛି । ଏକ–ମିଃ: ହେଡ଼୍‌ଲେ ତାଙ୍କର ବନ୍ଧୁ ଅକ୍‌ସଫୋର୍ଡ଼ର ସାର୍ ଜେମ୍‌ସ୍ ଟ୍ୟାଲବଟ୍‌ଙ୍କୁ ଲେଖିଥିବା ଚିଠି । ଦୁଇ–ପୂର୍ବୋକ୍ତ ବେତାର-ବାର୍ତ୍ତା । ତିନି–'ଆରାବେଲା ନୋଉଲସ୍' ନାମକ ଗୋଟିଏ ଜାହାଜର ଲଗ୍-ବୁକ୍, ଅର୍ଥାତ୍ ଦିନପଞ୍ଜିକାର କେତେକ ଅଂଶ, ଯେଉଁଥିରେ ଏକ ଆଶ୍ଚର୍ଯ୍ୟ କାଚ ଗୋଲକର କଥା ଲେଖାଅଛି । ଆଉ ଚାରି–ସେଇ କାଚ ଗୋଲକ ଭିତରୁ ମିଳିଥିବା ସଂପୂର୍ଣ୍ଣ ଅବିଶ୍ୱାସ୍ୟ ଏକ ବିବରଣୀ । ମୁଁ ଗୋଟି ଗୋଟି କରି ଏଇ ଚାରୋଟି ଲେଖା ଉଦ୍ଧୃତ କରିବି । ପ୍ରଥମେ ମିଃ ହେଡ଼୍‌ଲିଙ୍କ ଚିଠି । ସାର୍ ଜେମ୍‌ସ୍ ଟ୍ୟାଲ୍‌ବଟ୍‌ଙ୍କ ସୌଜନ୍ୟରୁ ମୁଁ ଏଇଟିକୁ ପାଇଛି । ଚିଠିର ତାରିଖ ଗତ ବର୍ଷର ଅକ୍‌ଟୋବର ମାସର ପହିଲା ।

–ଭାଇ ଟ୍ୟାଲ୍‌ବଟ୍, ଆଟଲାଣ୍ଟିକ୍ ମହାସାଗରର କ୍ୟାନାରି ଦ୍ୱୀପପୁଞ୍ଜ ଭିତରୁ ଯେଉଁଟି ସବୁଠାରୁ ବଡ଼ ଦ୍ୱୀପ ସେଇ ଗ୍ରାଣ୍ଡ୍ କ୍ୟାନାରିରୁ ଲେଖୁଛି । କିଛିଦିନ ବିଶ୍ରାମ ପାଇଁ ଆମେ ଏଠାରେ ଜାହାଜ ଲଗେଇଛୁ । ଏଇ ସମୁଦ୍ର ଯାତ୍ରାରେ ମୋର ବିଶେଷ ବନ୍ଧୁ ହୋଇଛନ୍ତି ଜାହାଜର ପ୍ରଧାନ ମେକାନିକ୍ ବିଲ୍ ସ୍କାନ୍‌ଲନ୍ । ଭାରି ମଜାର ଲୋକ ସେ, ଆଉ ଭାରି ଆମୋଦପ୍ରିୟ ବି । ଆମେ ଦି'ଜଣ ପୁଣି ମାର୍କିନ୍ ଦେଶର ଲୋକ ।

ମାରାକଟ୍‌ଙ୍କ ସହିତ ତୁମର ତ ଥରେ ଦେଖାହୋଇଥିଲା–ତେଣୁ ସେ ମହାଶୟ ଯେ କିପରି ଖଣ୍ଡିଏ 'ଶୁଷ୍କ କାଷ୍ଠ' ସେ କଥା ତୁମକୁ ବୁଝାଇବା ଦରକାର ନାହିଁ । ସେ ଯାହାହେଉ, ମୁଁ ଯେଉଁ କାମକୁ ଭଲପାଏ ତାହା ଏ ସାମୁଦ୍ରିକ ଅଭିଯାନର ଅଙ୍ଗ ହୋଇଥିବାରୁ ମୋତେ ଖୁବ୍ ଭଲଲାଗୁଛି । ସାମୁଦ୍ରିକ କଙ୍କଡ଼ା ବିଷୟରେ ମୋର ଯେଉଁ ନିବନ୍ଧଟି ପୁରସ୍କାର ପାଇଥିଲା ତାହା ମାରାକଟ୍‌ଙ୍କ ଦୃଷ୍ଟିରେ ପଡ଼ିଥିଲା । ତେଣୁ ଏଇ ଅଭିଯାନରେ ସେ ମୋତେ ସାଥୀ କରିଛନ୍ତି । କିନ୍ତୁ ତାଙ୍କ ଭଳି ଗୋଟିଏ ଜୀବନ୍ତ 'ମମି'ର ସାଥୀ ହେବା ଯେ କିଭଳି ବ୍ୟାପାର ତା' ନିଶ୍ଚୟ ବୁଝିପାରୁଥିବ । ସେ ଯେପରି ଏକାକୀ ରହିଥାନ୍ତି ଏବଂ ସବୁବେଳେ କାମରେ ଲାଗିଥାନ୍ତି ତାହା ଦେଖିଲେ ତାଙ୍କୁ କେହି ମଣିଷ ବୋଲି ମନେ କରିବ ନାହିଁ ।

ଗବେଷଣା ବ୍ୟତୀତ ଏ ସଂସାରର ଅନ୍ୟ କୌଣସି ବସ୍ତୁର ଅସ୍ତିତ୍ୱ ତାଙ୍କ ପାଖରେ ନାହିଁ । ସେ ପ୍ରାୟ ନୀରବ ଥା'ନ୍ତି । ମୁଖ ଭାବହୀନ । ଲୋମଶ ଭ୍ରୂଯୁଗଳ ତଳେ ପରସ୍ପରର ଅତି ନିକଟବର୍ତ୍ତୀ ତୀକ୍ଷ୍ଣ ଉଜ୍ଜ୍ୱଳ ଦୁଇଟି ସାନ ସାନ ଆଖି, ପତଳା ଓ ବସା ଓଠ । ନିରନ୍ତର ଚିନ୍ତା ଏବଂ କଠୋର ଜୀବନ ଯାପନ ହେତୁ ଏସବୁ ବନ୍ଧୁତା

ଲୋକ ପୃଥିବୀରେ ଦ୍ୱିତୀୟ ନାହାନ୍ତି–ନିଜ ଚିନ୍ତାରେ ସର୍ବଦା ମଗ୍ନ । ତା' ଉପରେ ସେ ଅତ୍ୟନ୍ତ ଗୋପନତାପ୍ରିୟ । ସଦାସର୍ବଦା କ'ଣ ସବୁ କାଗଜ ଆଉ ଚାର୍ଟନେଇ ବସିଥାନ୍ତି । ମୁଁ ତାଙ୍କ କ୍ୟାବିନରେ ପ୍ରବେଶ କଲା ମାତ୍ରକେ ସବୁ ଗୋଳେଇଗାଳେଇ ଗୋଟାଏ କଡ଼କୁ ଠେଲିଦିଅନ୍ତି । ମୋର ଧାରଣା–ଲୋକଟିର କ'ଣ ଗୋଟିଏ ମତଲବ ଅଛି । ଆମ ଜାହାଜ କୌଣସି ବନ୍ଦରରେ ନ ଲଗିବା ପର୍ଯ୍ୟନ୍ତ ସେ ତାହା ଆମ୍ଭମାନଙ୍କ ଆଗେ ପ୍ରକାଶ କରିବାକୁ ଅନିଚ୍ଛୁକ । ଦେଖିଲି, ବିଲ୍ ସ୍କାନ୍‌ଲନ୍‌ଙ୍କର ଧାରଣା ମଧ ତଦ୍ରୂପ ।

ସମୁଦ୍ରର ଗଭୀରତା ଅନୁସାରେ ଲବଣତାର ତାରତମ୍ୟ ବିଷୟରେ ଦିନେ ସନ୍ଧ୍ୟା ସମୟରେ ପରୀକ୍ଷାଗାରରେ ବସି ପରୀକ୍ଷା କରୁଛି, ସ୍କାନ୍‌ଲନ୍ ହଠାତ୍ କହିଲେ, 'ଦେଖନ୍ତୁ ମିଷ୍ଟର ହେଡ୍‌ଲେ, ଏଇ ମହାତ୍ମାଙ୍କର ମତଲବଟି କ'ଣ ବୋଲି ମାଲୁମ୍ ହୁଏ ଆପଣଙ୍କୁ ?'

ମୁଁ କହିଲି, 'ଏହା ପୂର୍ବରୁ ଏ କ୍ଷେତ୍ରରେ ଯାହା ହୋଇଛି ଆମେ ବି ସେଇୟା କରିବା–ଆଉ ଅଧିକା କ'ଣ ?'

ସ୍କାନ୍‌ଲନ୍ କହିଲେ–'ଆଦୌ ନୁହେଁ । ପୁଣି ଭାବନ୍ତୁ । ଆଚ୍ଛା, ମୋ କଥାହିଁ ଧରନ୍ତୁ ନା-ମୁଁ କାହିଁକି ସାଙ୍ଗରେ ଆସିଛି କୁହନ୍ତୁ ତ ?'

କହିଲି, 'ଯଦି କଳକବ୍‌ଜା କିଛି ଖରାପ ହୋଇଯାଏ–'

'ନା ନା, ଜାହାଜର କଳକବ୍‌ଜାର ଦାୟିତ୍ୱ ତ ସ୍କଚ୍ ଇଞ୍ଜିନିୟର୍ ମ୍ୟାକ୍‌ଲ୍ୟାରେନର । ଏତକି ବକ୍‌ଟେ ଇଞ୍ଜିନ୍ ଚଳାଇବା ପାଇଁ ମେରି ବ୍ୟାଙ୍କ୍ କୋମ୍ପାନି ତାଙ୍କର ସବ୍‌ସେ ବଢ଼ିଆ ଲୋକକୁ ଏଠାକୁ ପଠାଇନାହାନ୍ତି । ଆଚ୍ଛା, ଆସନ୍ତୁ ଆପଣଙ୍କୁ କିଛି ଇଲମ୍ ଦିଏ ।'

ପକେଟରୁ ଗୋଟାଏ ଚାବି ବାହାରକରି ପୀକ୍ଷାଗାରର ପଛପଟର ଗୋଟିଏ କବାଟ ବିଲ୍ ଖୋଲିଲେ । ସେଠାରୁ ଗୋଟାଏ ସିଡ଼ି ତଳକୁ ଚାଲିଯାଇଛି । ସେଇ ସିଡ଼ି ବାଟେ ଆମେ ଜାହାଜର ଖୋଳି ଭିତରେ ପ୍ରବେଶ କଲୁ । ସ୍ଥାନଟ ବେଶ୍ ପରିଷ୍କାର, କେବଳ ଚାରୋଟି ବିରାଟ ପ୍ୟାକିଂ ବାକ୍‌ସ ଭିତରୁ ଚାରୋଟି ଉଜ୍ଜ୍ୱଳ ଜିନିଷ ଉଙ୍କିମାରୁଥାଏ । ସେଗୁଡ଼ିକ ଇସ୍ପାତର ବଡ଼ ବଡ଼ ପାତିଆ । ଧାରଗୁଡ଼ିକରେ ଗୁଡ଼ାଏ ବୋଲ୍‌ଟ ଲାଗିଛି । ପ୍ରତ୍ୟେକଟି ପାତିଆ ପ୍ରାୟ ଦଶଫୁଟ ଲମ୍ବା, ଦଶଫୁଟ ଚଉଡ଼ା ଏବଂ ପ୍ରାୟ ଦେଢ଼ଇଞ୍ଚ ମୋଟ; ପ୍ରତ୍ୟେକର ମଝିରେ ଦେଢ଼ଫୁଟ ମାପର ଗୋଟିଏ ଗୋଲ କଣା ।

ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି, 'ଏଇଟି କି ପଦାର୍ଥ ?'

ବିଲ୍ କହିଲେ, 'ସେଇଟି ମୋର ଛୁଆ–ସେଇଟି ପାଇଁ ଖାସ୍ ଏଠାରେ ଅଛି ।'

ସୃଷ୍ଟି କଳାଭଳି ଭାବହୀନ । ତାଙ୍କର ମନ ବିଷୟରେ କହିଲେ କୁହାଯିବ ଯେ ତାହା ଅଗମ୍ୟ–ସେଠାକୁ ସାଧାରଣ ମଣିଷ ପଶି ପାରିବ ନାହିଁ । ଥରେ ଥରେ ମନେହୁଏ ତାଙ୍କ ମୁଣ୍ଡରେ କିଛି ଗୋଳମାଳ ଥିବା ପରା । ସେ ଯେଉଁ ଅଦ୍ଭୁତ ଯନ୍ତ୍ରଟି ତିଆରି କରିଛନ୍ତି ତା'ରି କଥା ଧର...କିନ୍ତୁ ନା, ଯାହାପରେ ଯିଏ ସେମିତି କହିଯିବି, ତା'ପରେ ତୁମେ ନିଜେ ବିଚାରକରିବ ।

ତା'ହେଲେ ମୂଳରୁ କୁହେଁ । ଷ୍ଟ୍ରାଟଫୋର୍ଡ଼ ଜାହାଜଟି ସାନ ହେଲେହେଁ ତାହାର ସବୁ ବ୍ୟବସ୍ଥା ନିର୍ଭୁଲ । ବାରଶହ ଟନ୍‌ର ଜାହାଜ, କିନ୍ତୁ ଡେକ୍ ବେଶ୍ ପ୍ରଶସ୍ତ । ସମୁଦ୍ରର ଗଭୀରତା ମାପିବା, ଚଳନ୍ତି ଜାହାଜରୁ ଟ୍ରଲ୍ (ଅର୍ଥାତ୍ ଚଉଡ଼ା-ମୁହାଁ ଖୁବ୍ ବଡ଼ ମୁଣାଭଳି ଜାଲ) ଓହ୍ଲାଇ ମାଛ ଧରିବା (ଏହାକୁ କହନ୍ତି ଟ୍ରଲିଂ), ଅଗଭୀର ସ୍ଥାନ ଖୋଳି ଜାହାଜ ଯିବାପାଇଁ ଯଥେଷ୍ଟ ଗଭୀର କରିଦେବା, ଟଣା ଜାଲ ପକାଇବା ଇତ୍ୟାଦି ଯେତେ ପ୍ରକାର ବନ୍ଦୋବସ୍ତ ଥିବା ସମ୍ଭବ ସବୁ ଅଛି । ଟ୍ରଲ୍ ଓଟାରିବା ପାଇଁ ବାଷ୍ପଚାଳିତ ପୁଲି ତ ଅଛି, ତା'ଛଡା ଅଛି ଆହୁରି ଅନେକ ପ୍ରକାର କଳକବ୍‌ଜା । ସେଥିଭିତରୁ ଅନେକ ଖୁବ୍ ସାଧାରଣ କଳକବ୍‌ଜା ଯାହା ଅନେକ ଜାହାଜରେ ଥାଏ କିନ୍ତୁ ଆଉ କେତେକ ମୋର ସଂପୂର୍ଣ୍ଣ ଅଚିହ୍ନା । ଏସବୁ ତଳେ ରହିଚି ଆମ ରହିବା କୋଠରିଗୁଡ଼ିକ–ବେଶ୍ ଆରାମଦାୟକ । ଆଉ ରହିଚି ଗୋଟିଏ ସୁସଜ୍ଜିତ ବୈଜ୍ଞାନିକ ପରୀକ୍ଷାଗାର ।

ଆମର ଜାହାଜ ରହସ୍ୟମୟ ବୋଲି ଯାତ୍ରା ଆରମ୍ଭ ପୂର୍ବରୁହିଁ ଖ୍ୟାତିଲାଭ କରିଥିଲା । ଅଳ୍ପଦିନପରେ ବୁଝିପାରିଲି ତାହାର ଯଥାର୍ଥତା । ପ୍ରଥମ କେତେ ଦିନ ଅବଶ୍ୟ ଜାହାଜର କାର୍ଯ୍ୟକଳାପରେ ଅସାଧାରଣତ୍ୱ କିଛି ନଥିଲା । ଉତ୍ତରସାଗରରେ ଘେରାଏ ବୁଲିଆସିଲୁ । ସେଠି ଥରେ ଦି'ଥର ଟ୍ରଲ୍ ପକାହୋଇଥିଲା । କିନ୍ତୁ ସେଠାକାର ଗଭୀରତା ହାରାହାରି ମାତ୍ର ଷାଠିଏ ଫୁଟ, ଅଥଚ ଆମର ଜାହାଜ ତିଆରି ହୋଇଛି ଅତି ଗଭୀର ସମୁଦ୍ର ପାଇଁ, ତେଣୁ ଉତ୍ତର ସାଗରକୁ ଯିବାର ଉଦ୍ଦେଶ୍ୟ ଜଣାଗଲା ନାହିଁ । ଅତି ଉତ୍କୃଷ୍ଟ ଖାଇବା ମାଛ, ଡଗ୍-ଫିସ୍, ସ୍କୁଇଡ୍ ଜେଲିଫିସ୍, ଆଉ ନଦୀ ବୋହିଆଣିଥିବା ପଟୁମାଟିର ପଙ୍କ ବ୍ୟତୀତ ଚିଠିରେ ଉଲ୍ଲେଖ କରିବା ଭଳି କିଛି ସେଠି ପାଇଲି ନାହିଁ । ତା'ପରେ ସେଠାରୁ ସ୍କଟଲାଣ୍ଡ ପାଖ ଦେଇ ଘୂରି ସିଧା ଦକ୍ଷିଣମୁହାଁ ଯିବାକୁ ଲାଗିଲୁ । କ୍ରମେ ଆମ କାମ ପାଇଁ ଉପଯୁକ୍ତ ସ୍ଥାନକୁ ଆସିଗଲୁ–ଆଫ୍ରିକାର ଉପକୂଳ ଓ ଏଇ କ୍ୟାନାରି ଦ୍ୱୀପପୁଞ୍ଜର ମଝିମଝିଆ ସ୍ଥାନକୁ ।

କୃଷ୍ଣପକ୍ଷର ଗୋଟିଏ ଘନଅନ୍ଧକାର ରାତ୍ରିରେ ଗୋଟିଏ ପାହାଡ ସହିତ ଧକ୍‌କା ଲାଗିବାରୁ ଆମେ ଅଳ୍ପକେ ରକ୍ଷାପାଇଗଲୁ । ଏହାଛଡା ଉଲ୍ଲେଖଯୋଗ୍ୟ ଆଉ କିଛି ଘଟିନି ।

ଗତ କେତେକ ସପ୍ତାହ ଭିତରେ ମାରାକଟ୍‌ଙ୍କ ସହିତ ଟିକିଏ ଘନିଷ୍ଠତା ପାଇଁ ଚେଷ୍ଟାକରିଥିଲି–କିନ୍ତୁ ସେ କ'ଣ ସହଜ କଥା ! ଏକେତ ତାଙ୍କଭଳି ଅନ୍ୟମନସ୍କ

ମୋତେ ଆଶ୍ଚର୍ଯ୍ୟ କରିପାରିଥିବା ହେତୁ ବିଲ୍‌ର ମଜାଦାର ମୁହଁ ଆହୁରି ମଜାଦାର ହୋଇଯାଇଥିଲା । ସେ କହିବାକୁ ଲାଗିଲା, 'ଏଇ ଜିନିଷଟିର ତଳଟା ଇସ୍ପାତର; ସେଟା ସେ ପ୍ୟାକିଂ କେସ ଭିତରେ ଅଛି । ତା'ପରେ ଦେଖନ୍ତୁ, ଗୋଟାଏ ମୁଣ୍ଡ ବି ରହିଚି–ଖିଲାଣ ଭଳି ଗୋଲ ଏବଂ ତା' ଦେହରେ ଗୋଟାଏ କଡ଼ା, ସେଥିରେ ଜଞ୍ଜିର କିମ୍ବା ତାରର ଦଉଡ଼ି ଲଗାଯାଇପାରିବ । ଆଚ୍ଛା, ଏଣେ ଜାହାଜର ତଳକୁ ଅନାନ୍ତୁ ।'

ତଳକୁ ଚାହିଁ ଦେଖିଲି ଲମ୍ୱାରେ ଚଉଡ଼ାରେ ସମାନ ଗୋଟିଏ କାଠର ମଞ୍ଚ । ତା'ର ଚାରିକୋଣରୁ ଚାରୋଟି ବଡ଼ ବଡ଼ ପେଞ୍ଚ । ପରିଷ୍କାର ବୁଝାଯାଉଥାଏ ଯେ ସେ'ଟିକୁ ଖୋଲି ଅଲଗା କରିହେବ ।

ବିଲ୍ କହିଲା, 'ଏ ଜାହାଜର ତଳ ଗୋଟିଏ ନୁହେଁ–ଦୁଇଟା । ମୋ ବୁଝିବାରେ, ବୁଢ଼ା ଜଣେ ପକ୍‌କା ଇଞ୍ଜିନିୟର । ମୁଁ ଭାବୁଛି–ମତଲବ ହେଉଚି ପ୍ରଥମେ ଗୋଟାଏ ପିଞ୍ଜରା ତିଆରି କରିବା, ଯାହାର କାନ୍ଥ କେତେଟା ଏଇଠି ଜମା କରାଯାଇଛି । ତା'ପରେ ସେଟାକୁ ଜାହାଜ ତଳପଟେ ପାଣିକୁ ଓହ୍ଲାଇ ଦିଆଯିବ । ସନ୍ଧାନୀ ବିଜୁଳିବତି ବି ଅଛି । ଅନୁମାନ କରୁଚି ଏଇ ବତି ଜଳାଇ ଏଇ ଗୋଲ ଗୋଲ ପୋର୍ଟ-ହୋଲ୍ ଭଳି ଝରକାବାଟେ ବାହାରକୁ ଦେଖିବା ବନ୍ଦୋବସ୍ତ କରାହୋଇଚି ।'

ଏମିତି ହଠାତ୍ ମୁଁ ଆମ ରହସ୍ୟମୟ ଜାହାଜ ବିଷୟରେ କିଛି ଜାଣିଲି । ଏହାପରେ କେତେଦିନ ପାଗ ବଡ଼ ଖରାପଥିଲା । ତା'ପରେ ଆଫ୍ରିକା ମହାଦେଶ ନିକଟବର୍ତ୍ତୀ ଗଭୀର ସମୁଦ୍ରରେ ଆମେ ଟ୍ରଲିଂ କରିବାକୁ ଲାଗିଲୁ । ସମୁଦ୍ରର ଗଭୀରତା ଅନୁସାରେ ପାଣିର ଉତ୍ତାପ ଓ ଲବଣତାର ତଥ୍ୟ ମଧ୍ୟ ତା' ସହିତ ସଂଗ୍ରହ କରିବାକୁ ଲାଗିଲୁ । ଭାରି ମଜା କାମ ସେ । ଗଭୀର ସମୁଦ୍ରରେ ଟ୍ରଲ୍ ପକାଇ ଓଟାରୁ । ତା'ର କୋଡ଼ିଏ ଫୁଟ ଚଉଡ଼ା ମୁହଁ ସାମନାରେ ଯାହା ପଡ଼େ ସବୁ ତା' ପେଟ ଭିତରକୁ ଯାଏ । ହୁଏତ କେତେବେଳେ ଟ୍ରଲ୍‌କୁ ପାଏ-ମାଇଲ୍ ତଳକୁ ଓହ୍ଲାଇଦେଲୁ ଏବଂ ସେଠୁ ଉଠିଲା ଗୋଟାଏ ପ୍ରକାରର ଥୋଡ଼ାଏ ମାଛ । ପୁଣି କେବେ ହୁଏତ ଅଧ ମାଇଲ ତଳକୁ ଓହ୍ଲାଇଦେଲୁ, ଉଠିଲା ଅନ୍ୟ ଏକ ପ୍ରକାର ଦଳେ ମାଛ । ସମୁଦ୍ରର ବିଭିନ୍ନ ସ୍ତରରେ ବିଭିନ୍ନ ଜାତିର ବାସିନ୍ଦା ଅଛନ୍ତି ଯେମିତି । ଥରେ ଥରେ ସମୁଦ୍ରର ତଳ ଚାଞ୍ଛି ଉଠିଲା ହୁଏତ ପ୍ରାୟ ଅଧଟନେ ପରିଷ୍କାର ଗୋଲାପି ରଙ୍ଗର ଜେଲି–ଜୀବସୃଷ୍ଟିର ଆଦିମ ଉପାଦାନ । କେତେ ଜାତିର ପଦାର୍ଥ ଓ ଜୀବ ଯେ ଉଠନ୍ତି ସେ ସବୁର ନାମ କହି ତୁମର ଧୈର୍ଯ୍ୟ ପରୀକ୍ଷା କରିବି ନାହିଁ । ତେବେ ଏତିକି ଜାଣିରଖ ଯେ, ସମୁଦ୍ରର ନାମ ରତ୍ନାକର ଏବଂ ଆମେ ଯଥେଷ୍ଟ ରତ୍ନ ଆହରଣ କରିଚୁ । କିନ୍ତୁ ଆଶ୍ଚର୍ଯ୍ୟର କଥା, ମାରାକଟ୍‌ଙ୍କ ମନ ଏସବୁ ଭିତରେ ନାହିଁ । ତାଙ୍କର ମୁଣ୍ଡ ଭିତରେ ସଂପୂର୍ଣ୍ଣ ଅଲଗା ଚିନ୍ତା ରହିଚି ଯେପରି । ଏ ଯେମିତି ଅସଲ କାମ ଆରମ୍ଭ କରିବା ପୂର୍ବରୁ ଅଭ୍ୟାସ କରାହେଉଚି କେବଳ ।

ଏଇ ପର୍ଯ୍ୟନ୍ତ ଲେଖି ଥରେ କୂଳକୁ ଓହ୍ଲାଇଥିଲି । କାଲି ସକାଳୁ ପୁଣି ଜାହାଜ ଯାତ୍ରା କରିବା କଥା । ଜେଟି ଉପରକୁ ଯାଇ ଦେଖିଲି ସେଠାରେ ଗୋଟାଏ ଲଢ଼େଇ ଚାଲିଛି, ଆଉ ମାରାକଟ୍ ଓ ବିଲ୍ ସ୍କାନ୍‌ଲନ୍ ଠିକ୍ ତା' ମଝିରେ । ବିଲ୍ କଣ୍ଡାବାଡ଼ରେ ଲୁଗା ପକାଇବାରେ ଖୁବ୍ ପଟୁ, ଆଉ ମୁଷ୍ଟିଯୁଦ୍ଧରେ ସେ ଓସ୍ତାଦ୍ । କିନ୍ତୁ ତା' ଚାରିପଟରେ ଛୋରା ହାତରେ ପ୍ରାୟ ଡଜନେ ସ୍ଥାନୀୟ ଲୋକ । ବ୍ୟାପାରଟି ବେଶ୍ ଗୋଳମାଳିଆ ଦେଖି ମୁଁ ସେ ଭିଡ଼ ଭିତରକୁ ପଶିଗଲି । ଦେଖିଲି ବ୍ୟାପାରଟି ହେଉଛି ଏଇୟା–ସେଠାକାର ଯେଉଁ ଅପରୂପଯାନ–ଯାହାକୁ ସେମାନେ ଖୁବ୍ ସମ୍ମାନ ଦେଖାଇ କହନ୍ତି କ୍ୟାବ୍–ସେଇଥିରୁ ଗୋଟିଏ ଭଡ଼ା କରି ମାରାକଟ୍ ତାଙ୍କର ଭୂତାତ୍ତ୍ୱିକ ତଥ୍ୟ ସଂଗ୍ରହ କରୁ କରୁ ଦ୍ୱୀପର ପ୍ରାୟ ଅଧେ ବୁଲି ସାରିଛନ୍ତି । କିନ୍ତୁ ତାଙ୍କ ପାଖରେ ଯେ ପାହୁଲାଟିଏ ନାହିଁ– ସେ କଥା ସେ ବିଲ୍‌କୁଲ୍ ଭୁଲିଯାଇଛନ୍ତି । ତା'ପରେ ଗାଡ଼ିବାଲା ଭଡ଼ା ମାଗେ ତ ସେ ଗାଡ଼ିଁଲିକୁ ସେକଥାଟା କୌଣସିମତେ ହୃଦୟଙ୍ଗମ କରାଇ ପାରନାହାନ୍ତି । ଗାଡ଼ିବାଲା ଜାମିନ୍ ବାବଦକୁ ତାଙ୍କ ଘଡ଼ିଟି ଛଡ଼େଇ ନେଇଚି ଏବଂ ଫଳରେ ବିଲ୍ ସ୍କାନ୍‌ଲନ୍‌ର ମୁଷ୍ଟି ଉଠିଚି । ମୁଁ ଠିକ୍ ସମୟରେ ପହଞ୍ଚିନଥିଲେ ସେ ଦୁଇଜଣଙ୍କର ପିଠି ଛୁରୀକାଘାତରେ ପିନ୍‌କୁସନ୍ ହୋଇଯାଇଥାନ୍ତା । ଗାଡ଼ିବାଲାକୁ ଦୁଇ ଡଲାର ଏବଂ ସ୍କାନ୍‌ଲନ୍‌ର ମୁଥରେ ଯା'ର ଆଖିତଳ କାଳିଆ ପଡ଼ିଯାଇଥିଲା ତାକୁ ପାଞ୍ଚ ଡଲାର ବକ୍‌ସିସ୍ ଦେଇ ଥଣ୍ଡାକଲି । ବିପଦଟି ଭଲରେ ଭଲରେ କଟିଗଲା ଏବଂ ସେ ଥର ପ୍ରଥମ କରି ମାରାକଟ୍‌ଙ୍କୁ ଗୋଟିଏ ରକ୍ତମାଂସର ଶରୀରଧାରୀ ମଣିଷ ବୋଲି ମନେହେଲା । ଆମେ ଜାହାଜକୁ ଫେରିଗଲା ପରେ ସେ ମୋତେ ତାଙ୍କ କ୍ୟାବିନ୍‌କୁ ଡାକିନେଇ ଧନ୍ୟବାଦ ଦେଲେ ।

ତା'ପରେ କହିଲେ, 'ଆଚ୍ଛା ମିଃ ହେଡ୍‌ଲେ, ଆପଣ ତ ଅବିବାହିତ !'

କହିଲି–'ହଁ' ।

'ଆପଣଙ୍କ ଉପରେ ନିର୍ଭରଶୀଳ ଆଉ ବି କେହି ନାହାନ୍ତି !'

'ନା' ।

'ଭଲ–ଏ ଅଭିଯାନର ଉଦ୍ଦେଶ୍ୟ ଆପଣଙ୍କୁ ଜଣାଇନାହିଁ । କେତୋଟି କାରଣରୁ ଏ ପର୍ଯ୍ୟନ୍ତ ତାହା ମୁଁ ଗୋପନ ରଖିବାକୁ ଇଚ୍ଛାକରିଥିଲି । ଗୋଟିଏ କାରଣ ହେଲା ଯେ ଉଦ୍ଦେଶ୍ୟଟି ଜାଣିପାରିଲେ ହୁଏତ ଆଉ କେହି ମୋ ଆଗରୁ ଏପରି ଗୋଟିଏ ଅଭିଯାନ ଆରମ୍ଭ କରିଦିଅନ୍ତା । ଯାହାହେଉ ବର୍ତ୍ତମାନ ଆମେ ବିରାଟ ଦୁଃସାହସିକ କାର୍ଯ୍ୟର ପରିଧିରେ ଉପସ୍ଥିତ, ଆଉ କେହି ଆମର ପରିକଳ୍ପନା ଚୋରି କରି ପାରିବ ନାହିଁ । କାଲି ଆମେ ଆମର ଅସଲ ଲକ୍ଷ୍ୟସ୍ଥଳ ଉଦ୍ଦେଶ୍ୟରେ ଯାତ୍ରା କରିବା ।'

'ସେ ଲକ୍ଷ୍ୟସ୍ଥଳଟି କ'ଣ ?'

ସେ ମୋ ଆଡ଼େ ଅନେକଟା ନଇଁପଡିଲେ; ତାଙ୍କର ସେଇ କଠୋର ମୁହଁରେ ଉନ୍ନତ୍ତ ଉତ୍ସାହ ଦୀପ୍ତ ହୋଇଉଠିଲା । କହିଲେ, 'ଆମର ଲକ୍ଷ୍ୟସ୍ଥଳ ଆଟ୍‌ଲାଣ୍ଟିକ ମହାସାଗରର ତଳ ଦେଶ ।'

ଏହା ଶୁଣି ମୁଁ ବିସ୍ମିତ ହୋଇଗଲି । ଏହାପରେ ଆଉ ଘଣ୍ଟାଏ ତାଙ୍କ କ୍ୟାବିନ୍‌ରେ ଥିଲି ଏବଂ ଅନେକ କଥା ତାଙ୍କଠାରୁ ଶୁଣିଲି । ଜାହାଜରୁ ଡାକ ନେଇଯିବାର ଶେଷ ଡଙ୍ଗା ଛାଡିବାକୁ ଆଉ ଅଳ୍ପ ସମୟ ଅଛି, ଏଇ ଅବସରରେ ସେ ସବୁ କଥା ତୁମକୁ କହିଯାଏ ।

ମାରାକଟ୍ କହିଲେ, 'ହଁ ତୁମେ ବର୍ତ୍ତମାନ ସ୍ୱଚ୍ଛନ୍ଦରେ ଏକଥା ଲେଖିପାର, କାରଣ ତୁମ ଚିଠି ଇଂଲଣ୍ଡରେ ପହଞ୍ଚିଲା ବେଳକୁ ଆମେ ଆମର କାର୍ଯ୍ୟକୁ ଝାସଦେଇଥିବୁ ।'

ଏହା କହି ବୃଦ୍ଧ ଓଠ ଚାପି ହସିବାକୁ ଲାଗିଲେ । ସେ ପୁଣି କହିବାକୁ ଲାଗିଲେ, 'ହଁ, ଝାସ ଦେବା ନୁହଁତ ଆଉ କଅଣ ! ବିଜ୍ଞାନର ଇତିହାସରେ ଆମ ଝାମ୍ପ ପ୍ରଦାନ ସ୍ମରଣୀୟ ହୋଇ ରହିବ । ଗୋଟାଏ କଥା ତୁମକୁ କୁହେ । ସମୁଦ୍ର ତଳେ ପାଣିର ଚାପ ଅତ୍ୟଧିକ ବୋଲି ଯେଉଁ ମତ ପ୍ରଚଳିତ ଅଛି ତାହା ଯେ ସମ୍ପୂର୍ଣ୍ଣ ଭ୍ରାନ୍ତ ସେ ବିଷୟରେ ମୁଁ ନିଃସନ୍ଦେହ । ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଅନ୍ୟାନ୍ୟ ଏପରି କେତୋଟି ବିଷୟ ଅଛି ଯାହାଫଳରେ ଯେତେଟା ଚାପ ହବାର କଥା ସେତେଟା ହୋଇପାରେନା । ଅବଶ୍ୟ ସେ ଅନ୍ୟାନ୍ୟ ବିଷୟଗୁଡିକ କ'ଣ ତାହ ବର୍ତ୍ତମାନ ମୁଁ କହିପାରିନାହିଁ । କେତୋଟି ସମସ୍ୟା ସମାଧାନ ଏ ପର୍ଯ୍ୟନ୍ତ ହୋଇପାରିନାହିଁ ଏବଂ ଏହା ସେମାନଙ୍କ ମଧ୍ୟରୁ ଗୋଟିଏ । ଆଚ୍ଛା, ମାଇଲିଏ ତଳେ କେତେ ଚାପ ହେବ ବୋଲି ତୁମର ଧାରଣା ?' ଚଶମାର ବଡ ବଡ କାଚ ଭିତର ଦେଇ ସେ ଆଖି ତରାଟି ମୋତେ ଅନାଇଁଲେ ।

ମୁଁ କହିଲି, 'ପ୍ରତି ବର୍ଗଇଞ୍ଚରେ ଏକଟନ୍‌ରୁ ଊଣା ନୁହେଁ, ଏହାତ ସ୍ପଷ୍ଟ ପ୍ରମାଣିତ ହୋଇସାରିଛି ।'

ସେ କହିଲେ, 'ଯେଉଁ ସବୁ ବିଷୟ ସ୍ପଷ୍ଟ ପ୍ରମାଣିତ ହୋଇସାରିଛି ସେ ସବୁକୁ ଅପ୍ରମାଣ କରିବାହିଁ ଚିରଦିନ ପ୍ରଗତିଶୀଳ ଲୋକଙ୍କ କାର୍ଯ୍ୟ । ନିଜର ବୁଦ୍ଧି ଖରଚ କର ବାବୁ ! ମାସେହେଲା ତୁମେମାନେ ଗଭୀର ସମୁଦ୍ର ତଳୁ ଅତିଶୟ ନରମ ଜୀବଜନ୍ତୁ ଉଠାଉଚ । ଏତେ ନରମ ଯେ ପାଣିରୁ ଛାଙ୍କି କୁଣ୍ଡରେ ରଖୁ ରଖୁ ସେମାନଙ୍କ ଆକାର ନଷ୍ଟ ହୋଇଯିବା ଭଳି ହୁଏ । ସେମାନଙ୍କ ଉପରେ ଏଇ ଭୟଙ୍କର ଚାପର କୌଣସି ନିଦର୍ଶନ ପାଇଚ ?'

କହିବାକୁ ବାଧ ହେଲି ଯେ–ପାଇନାହିଁ । ସେ କହିଲେ, 'କିମ୍ବା ଆମ ଟ୍ରଲ୍ କଥାଇ ଧର, ତା' ମୁହଁ ପାଖର ପାତିଆଗୁଡିକ ତ ସେଇ ଚାପରେ ଚେପ୍‌ଟା ହୋଇ ଯାଉ ନାହିଁ ?'

କହିଲି, 'ବୁଡାଳିମାନେ ତ ସେମାନଙ୍କ କାନ ଉପରେ ଭୟାନକ ଚାପ ଅନୁଭବ କରନ୍ତି ।'

'ଅବଶ୍ୟ କିଛି ଦୂର ପର୍ଯ୍ୟନ୍ତ ଏହା ଠିକ୍ । ଶରୀରର ଯେଉଁ ସ୍ଥାନଟି ସବୁଠାରୁ ଅନୁଭବଶୀଳ, ବାୟୁର ସାମାନ୍ୟ କମ୍ପନ ଯେଉଁଠି ଧରାପଡେ, ତାହା ହେଉଛି କାନର ଭିତରପଟ ଏବଂ ବୁଡ଼ିଲା ବେଳେ ତା' ଉପରେ ଯଥେଷ୍ଟ ଚାପ ଅବଶ୍ୟ ସେମାନେ ପାଆନ୍ତି । କିନ୍ତୁ ମୁଁ ଯେଉଁ ଉପାୟ କରିଛି ସେଥିରେ ଦେହରେ କୌଣସି ଚାପ ପଡ଼ିପାରିବ ନାହିଁ । ଗୋଟିଏ ଇସ୍ପାତର ପିଞ୍ଜରା ଭିତରେ ଥାଇ ଆମେ ଓହ୍ଲାଇବୁ । ତା' ଦେହରେ ସ୍ଫଟିକର ଝରକା ଥିବ । ଦେଢ଼ଇଞ୍ଚ ମୋଟା ବିଶେଷ ଶକ୍ତ ତିଆରି ଡବଲ ନିକେଲ ଦିଆ ଇସ୍ପାତର ପାତ ଭେଦିବାର କ୍ଷମତା ସେ ଚାପର ରହିବ ନାହିଁ ବୋଲି ମୁଁ ଆଶା କରେ । ଆଉ ମୋ ଗଣନା ଯଦି ଭୁଲହୋଇଥାଏ–ଛାଡ଼, ତୁମେ ତ କହୁଛ ତୁମର ମୁଖାପେକ୍ଷୀ କେହିନାହାନ୍ତି–ହେଲା ବା ଗୋଟିଏ ମହାନ୍ ଦୁଃସାସିକ କାମରେ ଆମେ ମୃତ୍ୟୁ ବଣ କଲୁ ! ଅବଶ୍ୟ ତୁମେ ଯଦି ଏ କାମରେ ରହିବାକୁ ଇଚ୍ଛା ନ କର ତେବେ ମୁଁ ଏକାହିଁ ଯାଇପାରିବି ।'

ମାରାକଟ୍‌ଙ୍କ ମତଲବ ମୋତେ ଲାଗିଲା ଚରମ ପାଗଳାମି । କିନ୍ତୁ ଏଭଳି ଆହ୍ୱାନ ଗ୍ରହଣ ନ କରିବା କେତେ କଠିନ ତା' ନିଶ୍ଚୟ ତୁମେ ଜାଣ । ମୁଁ ନାନା କଥା କହୁଥିବା ଭିତରେ ଏଆଡ଼େ ମନେ ମନେ ଭାବିଲାଗିଲି ।

ପଚାରିଲି, 'କେତେ ତଳକୁ ଯିବେ ବୋଲି ସ୍ଥିର କରିଛନ୍ତି, ସାର୍ ?'

ଟେବୁଲ୍ ଉପରେ ଥିଲା ଗୋଟିଏ ଚାର୍ଟ । କ୍ୟାନାରି ଦ୍ୱୀପପୁଞ୍ଜର ଦକ୍ଷିଣ-ପଶ୍ଚିମସ୍ଥ ଗୋଟିଏ ଜାଗାରେ ସେ କମ୍ପାସ୍ କଣ୍ଟା ରଖିଲେ । କହିଲେ, 'ଗତବର୍ଷ ଏଇପରି ଗୋଟିଏ ସ୍ଥାନରେ ଗଭୀରତା ମାପିବା ପାଇଁ ମୁଁ କେତେଥର ଓଳମ ପକାଇଥିଲି । ସେଇଠି ଗୋଟିଏ ଅତ୍ୟନ୍ତ ଗଭୀର ଡୀପ୍ (ଖାତ/ଗଣ୍ଡ) ଅଛି । ସେଠି ଆମେ ପଚିଶ ହଜାର ଫୁଟ ଗଭୀରତା ପାଇଥିଲୁ । ମୁଁ ହିଁ ପ୍ରଥମେ ସେ ବୃତ୍ତାନ୍ତ ପ୍ରକାଶକରେ । ଭବିଷ୍ୟତର ଚାର୍ଟରେ ସେ ସ୍ଥାନ 'ମାରାକଟ୍ ଡୀପ୍' ନାମରେ ଉଲ୍ଲିଖିତ ହେବାର ଦେଖିବ ।'

ମୁଁ କହିପକାଇଲି, 'କି ସର୍ବନାଶ, ଆପଣ ସେଇ ଅତଳ ଗହ୍ୱର ଭିତରକୁ ଓହ୍ଲାଇବେ ନା କଅଣ ?'

ମୃଦୁ ମୃଦୁ ହସି ସେ କହିଲେ, 'ନା ନା, ତଳକୁ ଓହ୍ଲାଇବା ପାଇଁ ଆମର ଶିକୁଳି ବା ପବନ ପାଇଁ ନଳ କୌଣସି ଅଧମାଇଲରୁ ବେଶି ତଳକୁ ପାଏ ନାହିଁ । ମୁଁ କହୁଥିଲି ଯେ ଏଇ ଗଭୀର ଗର୍ତ୍ତ ବହୁକାଳ ପୂର୍ବେ ପୃଥିବୀର ଆଭ୍ୟନ୍ତରୀଣ ଆଗ୍ନେୟ ଉତ୍‌ପାତରୁ ସୃଷ୍ଟି ହୋଇଛି । ତା' ଚାରିପଟେ ଗୋଟିଏ ଶୈଳଶିରା ବା ଗୋଟିଏ

ସଂକୀର୍ଣ୍ଣ ଉପତ୍ୟକା ଗୋଟିଏ ଗୋଲାକାର ମଞ୍ଚଭଳି ତାକୁ ଘେରି ରହିଛି । ତାହା ତିନିଶହ ଫ୍ୟାଦାମ୍ (୧ଫ୍ୟାଦାମ୍=୬ଫୁଟ) ରୁ ବେଶି ଗଭୀର ନୁହେଁ ।'

'ତିନିଶହ ଫ୍ୟାଦାମ୍ ! ମାଇଲକର ତିନି ଭାଗରୁ ଭାଗେ ?'

'ହଁ, ମୋଟାମୋଟି ସେୟା ମୋର ଇଚ୍ଛା । ଆମମାନଙ୍କର ସେଇ ଚାପ ସହନକ୍ଷମ ପିଞ୍ଜରାଟିରେ ଆମକୁ ସେହି ଶୈଳଶିରା ଉପରେ ଓହ୍ଲାଇଦିଆଯିବ । ସେଠାରେ ଆମେ ଯଥାସମ୍ଭବ ନିରୀକ୍ଷା ଓ ତଥ୍ୟ ସଂଗ୍ରହ କରିବୁ । କଥା କହିବାପାଇଁ ଜାହାଜ ପର୍ଯ୍ୟନ୍ତ ଗୋଟିଏ ନଳି ଥିବ । ତାରି ସାହାଯ୍ୟରେ ଜାହାଜରେ ଥିବା ଲୋକଙ୍କୁ ଆମେ ନିର୍ଦ୍ଦେଶ ଦେଇପାରିବୁ–କୌଣସି ଅସୁବିଧା ହେବନାହିଁ । ଉଠିବାକୁ ଇଚ୍ଛା କଲେ ଉପରକୁ ଜଣାଇଲେ ହିଁ ହେଲା ।'

'ପବନ ?'

'ପମ୍ପ୍ କରି ଆମ ପାଖକୁ ପଠାହେବ ।'

'କିନ୍ତୁ ସେଠି ତ ସୂଚିଭେଦ୍ୟ ଅନ୍ଧକାର ନିଶ୍ଚୟ ?'

'ଠିକ୍ କଥା । ଜାହାଜ ଇଞ୍ଜିନ୍‌ର ଶକ୍ତିଦ୍ୱାରା ପିଞ୍ଜରାରେ ବିଜୁଳି ଆଲୁଅ ଜଳିବ, ଆଉ ତା' ସହିତ ଥିବା ଦୁଇ ଭୋଲ୍‌ଟ୍‌ର ଡ୍ରାଇସେଲ୍ ଛ'ଟି । ସେସବୁ ବା'ର ଭୋଲ୍‌ଟ୍‌ର ମିଳିବ । ଏସବୁ ସହିତ ଗୋଟାଏ ସିଗ୍‌ନ୍ୟାଲିଂ ଆଲୋକ ଥିବ ଯାହାଦ୍ୱାରା କି ଇଚ୍ଛାଅନୁସାରେ ଯେ କୌଣସି ଦିଗକୁ ଆଲୁଅ ପକାଇ ହେବ । ଏସବୁଦ୍ୱାରା ଆମ କାମ ଚଳିଯିବ । ଆଉ କ'ଣ ଅସୁବିଧା କହ ?'

'ଯଦି ଆମର ପବନ ନଳିଗୁଡ଼ିକ ଗୋଳମାଳ ହୋଇଯାଏ ?'

'ତା ହବ ନାହିଁ । ତା' ଛଡ଼ା, ହାତରପାଞ୍ଚ ଭଳି ଚବିଶ ଘଣ୍ଟା କାମ ଚଳାଇ ପାରିବା ଭଳି ଟିଉବ ଭର୍ତ୍ତି ପବନ ବି ପ୍ରସ୍ତୁତ ଥିବା । ତୁମେ ସବୁ ପ୍ରଶ୍ନର ଉତ୍ତର ପାଇଲ ତ ? ବର୍ତ୍ତମାନ ଯିବାକୁ ପ୍ରସ୍ତୁତ ?'

ଉତ୍ତର ଦେବା ସହଜ ନୁହେଁ । ଚିନ୍ତା ପବନଠୁ ବି ଦ୍ରୁତ ଗତିରେ ଯାଏ । ମୁହୂର୍ତ୍ତକ ଭିତରେ ମୋ ମୁଣ୍ଡ ଭିତରେ ଅନେକ କଥା ଖେଳିଗଲା । ସ୍ପଷ୍ଟ ମନେହେଲା ସେଇ ପିଞ୍ଜରା ଭିତରେ ଥାଇ ଆମେ ସମୁଦ୍ରର ଗଭୀରତମ ସ୍ଥଳକୁ ଯାଇଛୁ, ଆଉ ପିଞ୍ଜରା ଭିତରର ପବନ ଦୂଷିତ ହୋଇଗଲାଣି । ଦେଖିଲି ପିଞ୍ଜରାର ଇସ୍ପାତ-କାନ୍ଥ ଗୁଡ଼ିକ ପାଣିର ପ୍ରଚଣ୍ଡ ଚାପରେ ଭିତରକୁ ଠେଲି ଆସୁଛି । ଜୋଡ଼ ଜାଗାଗୁଡ଼ିକ ଧୀରେ ଧୀରେ ଖୋଲିଯାଉଛି, ପାଣି ପଶିଆସୁଛି ଭିତରକୁ । ତଳଆଡ଼କୁ ଧୀରେ ଧୀରେ ପିଞ୍ଜରାଟି ପାଣିରେ ପୂର୍ଣ୍ଣ ହୋଇଯାଇଚି । ସେ ମୃତ୍ୟୁ ଭୟଙ୍କର ଓ ମନ୍ଥର । ଧ୍ୟାନ ଭାଙ୍ଗି ଦେଖିଲି ମାରାକଟ୍ ସ୍ଥିର ଦୃଷ୍ଟିରେ ମୋ ଆଡ଼କୁ ଅନାଇଁଛନ୍ତି । ସେ ଦୃଷ୍ଟିରେ ବିଜ୍ଞାନ ପାଇଁ ଆତ୍ମୋତ୍ସର୍ଗର ଜ୍ୱଳନ୍ତ ଉତ୍ସାହ । ସେ ଉତ୍ସାହ ପାଗଳାମି ହୋଇଥିଲେ ବି ନିଃସ୍ୱାର୍ଥ ଓ ମହତ୍ । ତା'ର ସ୍ପର୍ଶରେ

ଯେପରି ମୁଁ ବି ଜଳିଉଠିଲି । ସଲଖି ଛିଡ଼ା ହୋଇ ତାଙ୍କ ଆଡ଼କୁ ମୋ ହାତ ବଢ଼ାଇଦେଲି । କହିଲି, 'ଡକ୍ଟର, ମୁଁ ଶେଷ ପର୍ଯ୍ୟନ୍ତ ଆପଣଙ୍କର ସାଥୀ ରହିବି ।'

ସେ କହିଲେ, 'ମୁଁ ତ ଜାଣିଥିଲି ତୁମ ପେଟରେ କିଛି ବିଦ୍ୟା ଅଛି । କିନ୍ତୁ କେବଳ ସେଥିପାଇଁ ମୁଁ ତୁମକୁ ବାଛି ନାହିଁ ଯେ ।' ତାପରେ ଟିକିଏ ମୁରୁକି ହସି କହିଲେ, 'କିମ୍ବା ସାମୁଦ୍ରିକ କଙ୍କଡ଼ା ସହିତ ତୁମର ନିବିଡ଼ ପରିଚୟ ପାଇଁ ମଧ୍ୟ ନୁହେଁ । ତୁମର ଅନ୍ୟ ଯେଉଁ ଗୁଣଟି ଅଛି ସେଥିପାଇଁ ମୋର ପ୍ରୟୋଜନ ଥିଲା ସବୁଠାରୁ ବେଶି–ତା ହେଉଛି ତୁମର ଅଟଳ ସାହସ ଓ ନିଷ୍ଠା ।'

ସେଇ ମିଠା କଥା ଦୁଇଟି ଶୁଣାଇ ସେ ମୋତେ ବିଦାୟଦେଲେ । ସେଠାରୁ ଆସିବା ପରେ ମୋର ହୋସ୍ ଫେରିଆସିଲା । ବର୍ତ୍ତମାନ ମନେହେଉଛି ମୋର ସଂପୂର୍ଣ୍ଣ ଭବିଷ୍ୟତ ତାଙ୍କ ପାଖରେ ବନ୍ଧା ଦେଇ ଆସିଲି । ଯା'ହେବାର ହୋଇଗଲା । ଶେଷ ଡାକ-ନୌକା ଛାଡ଼ିବାକୁ ଯାଉଛି, ଚିଠି ପାଇଁ ଡକାପଡ଼ିଚି । ଭାଇ ଟ୍ୟାଲ୍‌ବଟ୍, ହୁଏତ ଏହା ମୋର ଶେଷ ଚିଠି । ଯଦି ପୁଣି ମୋର ଚିଠି ପାଅ ତେବେ ସେ ଚିଠି ଅବଶ୍ୟ ହେବ ପ୍ରକୃତରେ ଏକ ପଢ଼ିବାଭଳି ଚିଠି । ଆଉ ନ ପାଅ ଯଦି ତେବେ କ୍ୟାନାରିର ଦକ୍ଷିଣରେ ଥିବା ଯେକୌଣସି ସ୍ଥାନରୁ ନିମ୍ନଲେଖାଟି ମୋ କବର ଉଦ୍ଦେଶ୍ୟରେ ଭସାଇଦେବ–

'ଏଇଠି ବା ଏଇଠି କୋଉଠି ରହିଛି
ମାଛର ଭୁକ୍ତାବଶିଷ୍ଟ
ମୋର ବନ୍ଧୁ ସାଇରାସ୍ ଜନ୍ ହେଡ଼୍‌ଲେ ।'

## ଦୁଇ

ଏ ବିଷୟରେ ଦ୍ୱିତୀୟ ଦଲିଲଟି ହେଲା ପୂର୍ବକଥିତ ବେତାର ବାର୍ତ୍ତା । ଯେଉଁସବୁ ଜାହାଜର ଗ୍ରାହକ-ଯନ୍ତ୍ରରେ ତାହା ଧରାପଡ଼ିଥିଲା ତା' ମଧ୍ୟରୁ ଡାକ-ଜାହାଜ 'ଆରୋୟା' ଅନ୍ୟତମ । ଗତବର୍ଷ ଅକ୍ଟୋବର ତିନି ତାରିଖ ବେଳ ତିନିଟା ସମୟରେ ସେଇ ଜାହାଜରେ ଏଇ ବାର୍ତ୍ତା ଗୃହୀତ ହୋଇଥିଲା । ଅର୍ଥାତ୍, ହେଡ଼୍‌ଲେଙ୍କ ଚିଠି ଅନୁସାରେ, 'ଷ୍ଟ୍ରାଟଫୋର୍ଡ଼' ଗ୍ର୍ୟାଣ୍ଡକ୍ୟାନାରୀ ଛାଡ଼ିବାର ଦୁଇଦିନ ପରେ ବାର୍ତ୍ତାଟି ଆସେ । ପ୍ରାୟ ସେଇ ସମୟରେ ଗ୍ୟାଣ୍ଡକ୍ୟାନାରୀର ପ୍ରାୟ ଦୁଇଶହ ମାଇଲ ଦକ୍ଷିଣ-ପଶ୍ଚିମରେ ଗୋଟିଏ ବାଷ୍ପୀୟ ଜାହାଜ ପ୍ରବଳ ଝଡ଼ରେ ବିପର୍ଯ୍ୟସ୍ତ ହେବା ନରଓ୍ୱେର ସେଇ ଅଝାଲ ଜାହାଜଟିରୁ ଦେଖାଯାଏ । ବାର୍ତ୍ତାଟି ଏଇପରି–

''ଝଡ଼ରେ ଜାହାଜ ଓଲଟି ପଡ଼ିଛି । ଆଉ ଆଶା ନାହିଁ ବୋଧହୁଏ । ମାରାକଟ୍ ଓ ହେଡ଼୍‌ଲେ ଆଗରୁ ଯାଇଛନ୍ତି । ଘଟଣା ଅବୋଧ । ଓଳମ ତାର ଅଗରେ ହେଡ଼୍‌ଲେଙ୍କର ରୁମାଲ । ଈଶ୍ୱର ଭରସା । ଏସ୍-ଏସ୍-ଷ୍ଟ୍ରାଟଫୋର୍ଡ଼ ।''

ରୋଗୀର ପ୍ରଳାପ ପରି 'ଷ୍ଟ୍ରାଟଫୋର୍ଡ୍'ର ଏହି ଶେଷ ବାର୍ତ୍ତା ଭିତରେ ଗୋଟାଏ କଥା ପୁଣି ଏଡ଼େ ଅଦ୍ଭୁତ ଯେ ତାହାକୁ ବାର୍ତ୍ତାପ୍ରେରକର ମୁଣ୍ଡର ଗୋଳମାଳ ବୋଲି ଧରିନିଆହୋଇଥିଲା । ଯାହାହେଉ, ଜାହାଜଟି ଯେ ବୁଡ଼ିଯାଇଛି ସେଥିରେ ଆଉ କୌଣସି ସନ୍ଦେହ ରହିଲା ନାହିଁ ।

ତୃତୀୟ ଦଲିଲଟି ହେଉଛି 'ଆରାବେଲା ନେଉଲସ୍' ନାମକ ଜାହାଜର ଦିନପଞ୍ଜିକାର କିୟଦଂଶ । ସେ ବିଷୟରେ ଖବରକାଗଜରେ ବି ପ୍ରକାଶ ପାଇଛି । ତାହାର କ୍ୟାପଟେନ୍ ଥିଲେ ଆମୋସ୍ ଗ୍ରୀନ୍ । ଜାହାଜଟି 'କାର୍ଡ଼ିଫ୍'ରୁ କୋଇଲା ନେଇ ବୁୟୋନୋସ ଏୟାରସ୍‌କୁ ଯାଉଥିଲା । ତାହାର ଦିନପଞ୍ଜିକାରେ ଏଇ ବର୍ଷର ଜାନୁଆରୀ ପାଞ୍ଚ ତାରିଖରେ, ଅର୍ଥାତ୍ 'ଷ୍ଟ୍ରାଟଫୋର୍ଡ୍' ବୁଡ଼ିଯିବାର ତିନିମାସ ପରେ ଯାହା ଲେଖାହୋଇଥିଲା ନିମ୍ନରେ ତାହା ଅବିକଳ ଉଦ୍ଧୃତ ହେଲା—

'ବୁଧବାର, ଜାନୁଆରୀ ୫ । ଅକ୍ଷାଂଶ ୨୭° ୧୪' ଉତ୍ତର, ଦ୍ରାଘିମା ୨୮° ପଶ୍ଚିମ । ସମୁଦ୍ର ଶାନ୍ତ । ଆକାଶ ନୀଳ । ଭିଣା ତୁଳା ପରି ମେଘମାଳା । ସମୁଦ୍ର କାଚ ଭଳି ଦିଶୁଚି । ମଝି ପହରାର ଦୁଇଟି ଘଣ୍ଟା ବାଜିଲାବେଳେ ଫାଷ୍ଟ୍ ଅଫିସର ସଂବାଦ ଦେଲେ ଯେ ଗୋଟିଏ ଉଜ୍ଜ୍ୱଳ ପଦାର୍ଥ ସମୁଦ୍ରରୁ ଅନେକ ଉଚ୍ଚକୁ ଉଠିଯାଇ ପୁଣି ପଡ଼ିଯିବାର ସେ ଦେଖିଲେ । ପ୍ରଥମେ ସେ ଭାବିଥିଲେ ତାହା କୌଣସି ଅଦ୍ଭୁତ ଜାତିର ମାଛ, କିନ୍ତୁ ଦୂରବୀକ୍ଷଣ ସାହାଯ୍ୟରେ ଦେଖିଲେ ତାହା ରୂପାଭଳି ଝକ୍‌ଝକ୍ ଗୋଟିଏ ଗୋଲ ଜିନିଷ । ତାହା ଏତେ ହାଲୁକା ଯେ ତାହା ପାଣି ଉପରେ ଭାସୁଥିଲା ବୋଲି ନକହି ପାଣି ଉପରେ ରଖାହୋଇଥିଲା କହିଲେ ଠିକ୍ ହେବ । ମୁଁ ଦେଖିଲି ତାହା ଗୋଟିଏ ଫୁଟବଲ ଭଳି ବଡ଼, ଜାହାଜର ଡାହାଣକୁ ପ୍ରାୟ ଅଧମାଇଲିଏ ଦୂରରେ ପାଣି ଉପରେ ଝଟକୁଛି । ସେକଣ୍ଡମେଟ୍ ଯାଇ ସେଇଟିକୁ ଜାହାଜକୁ ଆଣିଲେ ।'

'ଦେଖାଗଲା ଜିନିଷଟି ଗୋଟିଏ ମଜଭୁତ କାଚ ତିଆରି ଗୋଲକ, ଭିତରେ ଏପରି ଏକ ହାଲୁକା ଗ୍ୟାସ ଭରିଦିଆହୋଇଛି ଯେ ଉପରକୁ ଫିଙ୍ଗିଲେ ତାହା ପିଲାଙ୍କ ବେଲୁନ୍ ଭଳି ଧୀରେ ଧୀରେ ଖସେ । ସେଇଟି ପ୍ରାୟ ସ୍ୱଚ୍ଛ । ତା' ଭିତରେ କାଗଜ ଭଳି କିଛି ମୋଡ଼ିମୋଡ଼ି ହୋଇ ଥିବାର ମନେହେଲା । ତାହା ବାହାର କରିବା ଉଦ୍ଦେଶ୍ୟରେ ଗୋଲକଟିକୁ ଭାଙ୍ଗିବାକୁ ଯାଇ ଦେଖାଗଲା ଯେ ତାହା ଅସମ୍ଭବରୂପେ ଟାଣ । ହାତୁଡ଼ିରେ ବି ଭାଙ୍ଗି ହେଲାନାହିଁ । ଶେଷରେ ମୁଖ୍ୟ ଇଞ୍ଜିନିୟର୍ ତାକୁ ବୁଲୁଥିବା ଫ୍ଲାଇ ହୁଇଲ୍‌ରେ ଲଗାଇ ଘୂରାଇବାରୁ ତାକୁ ଭାଙ୍ଗି ହେଲା । କିନ୍ତୁ ବଡ଼ ଦୁଃଖର କଥା ଯେ ଭାଙ୍ଗିବାମାତ୍ରେ ତାହା ଧୂଳିଭଳିଆ ଗୁଣ୍ଡ ହୋଇଗଲା । ପ୍ରତ୍ୟେକଟି କଣା ଆଲୁଅରେ ଜକଜକ ହେଲା । କିନ୍ତୁ ପରୀକ୍ଷା କରିବା ଭଳି ଉପଯୁକ୍ତ ପରିମାଣର ଗୁଣ୍ଡ ମିଳିଲା ନାହିଁ । କାଗଜଟି ଅବଶ୍ୟ ଆମେ ପାଇଲୁ ତାହା ପଢ଼ି ତାହାର ଅସମ୍ଭବ ଗୁରୁତ୍ୱ ଉପଲବ୍ଧି କଲୁ । ସ୍ଥିର କଲୁ ଲା-ପ୍ଲାଟାରେ ପହଞ୍ଚି ତାକୁ ସେଠାର ବ୍ରିଟିଶ କନ୍‌ସାଲଙ୍କ ହାତରେ ଦିଆହେବ ।

ମୋ ଜୀବନର ପଇଁତିରିଶଟି ବର୍ଷ ସମୁଦ୍ରରେ କଟିଚି—କିନ୍ତୁ ଏପରି ଅଦ୍ଭୁତ ବ୍ୟାପାର କେବେହେଁ ଦେଖିନଥିଲି । ଜାହାଜର ସମସ୍ତେ ତାହାହିଁ କହୁଛନ୍ତି । ଏ ସବୁର ପ୍ରକୃତ ତାତ୍ପର୍ଯ୍ୟ ମୋ'ଠାରୁ ବିଜ୍ଞତର ବ୍ୟକ୍ତିମାନେ ସ୍ଥିର କରିବେ ।

ବାକି ରହିଲା ଆମର ଚତୁର୍ଥ ଓ ଶେଷ ଦଲିଲ—ଏଇ କାଚଗୋଲକ ଭିତରୁ ମିଳିଥିବା ସେହି ଅତ୍ୟାଶ୍ଚର୍ଯ୍ୟ ବିବରଣ । ନିମ୍ନରେ ତାହା ଅବିକଳ ଉଦ୍ଧୃତ ହେଲା—ମୁଁ କାହା ଉଦ୍ଦେଶ୍ୟରେ ଲେଖୁଛି ? ପୃଥିବୀ ଗୋଟାକର ଲୋକଙ୍କୁ କହିପାରନ୍ତି । କିନ୍ତୁ ତାହା ହେବ ନିହାତି ବେଠକ୍ ଠିକଣା । ତେଣୁ ମୁଁ ମୋର ବନ୍ଧୁ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟର ସାର୍ ଜେମ୍ସ୍ ଟ୍ୟାଲବଟ୍‌ଙ୍କ ଉଦ୍ଦେଶ୍ୟରେ ଲେଖୁଛି । ଶେଷ ଚିଠିଟି ମୁଁ ତାଙ୍କହିଁ ଲେଖିଥିଲି । ଏହି ଚିଠିଟି ସେଇ ଚିଠିର ଉତ୍ତରପର୍ବ ବୋଲି ଧରିନିଆଯିବ । ଏଇ ଗୋଲକଟି କୌଣସି ମଗର ମାଛ ପେଟକୁ ନ ଯାଇ ଦିବାଲୋକ ଦେଖିଲେ ବି କାହା ଆଖିରେ ପଡ଼ିବାର ସମ୍ଭାବନା ଶହକେ ଏକ ବୋଲି ମୋର ଧାରଣା । ହୁଏତ ଚିରଦିନ ଏହା ସମୁଦ୍ରରେ ଭାସୁଥିବ, ହୁଏତ କେତେଥର କେତେ ଜାହାଜ ଏହାର ପାଖ ଦେଇ ଚାଲିଯିବେ, କିନ୍ତୁ ଏ'ଟି କାହାରି ଦୃଷ୍ଟିରେ ପଡ଼ିବ ନାହିଁ । ତଥାପି ଏ ଚେଷ୍ଟା ଥରେ କରିବା ନିଶ୍ଚୟ ଉଚିତ । ମାରାକଟ୍ ଏହିପରି ଆଉ ଗୋଟିଏ ଗୋଲକ ଛାଡୁଛନ୍ତି । ତେଣୁ ଏ ଅଦ୍ଭୁତ କାହାଣୀ ପୃଥିବୀର ଲୋକମାନଙ୍କ ନିକଟରେ କୌଣସିମତେ ପହଞ୍ଚି ବି ପାରେ । ଅବଶ୍ୟ ସେମାନେ ଏ କାହାଣୀ ବିଶ୍ୱାସ କରିବେ କି ନା ସେ ଭିନ୍ନ କଥା । କାଚ ଭଳି ଏକ ପଦାର୍ଥରେ ତିଆରି ଆଶ୍ଚର୍ଯ୍ୟ ପ୍ରକାର ଟାଣୁଆ ଏଇ ଗୋଲକଟି ଯେତେବେଳେ ଦେଖିବେ, ଆଉ ତା' ଭିତରେ 'ଲାଘବଜାନ' ଗ୍ୟାସ (ଏଇ ଗ୍ୟାସ୍ ଅତଳ ସାଗର ଅଧିବାସୀମାନେ ତିଆରି କରିଛନ୍ତି, ଏହା ଉଦ୍‌ଜାନ ଗ୍ୟାସଠାରୁ ନଅ ଗୁଣ ହାଲୁକା) ଭରତି ଥିବାର ଦେଖିବେ, ସେତେବେଳେ ସେମାନେ ବୁଝିପାରିବେ ବ୍ୟାପାରଟି ସାଧାରଣ ଘଟନାଠାରୁ ଟିକିଏ ଭିନ୍ନ । ଆଉ ଯିଏ ଯାହା କରନ୍ତୁ, ଟ୍ୟାଲବଟ୍, ତୁମେ ନିଶ୍ଚୟ ଏହାକୁ ନପଢ଼ି ପକାଇଦେବନାହିଁ ।

ଯଦି କେହି ବ୍ୟାପାରଟି ମୂଳରୁ ଜାଣିବାକୁ ଇଚ୍ଛା କରନ୍ତି; ତେବେ ଗତବର୍ଷ ଅକ୍‌ଟୋବର ପହିଲା ତାରିଖରେ ଗ୍ର୍ୟାଣ୍ଡ କ୍ୟାନାରୀ ଛାଡ଼ିବା ଆଗ ରାତିରେ ଯେଉଁ ଚିଠି ତୁମକୁ ଲେଖିଥିଲି ସେଥିରୁ ସବୁ ଖବର ମିଳିବ । ଆମ କପାଳରେ କ'ଣ ଅଛି ତା' ଯଦି ସେତେବେଳେ ଜାଣିଥାନ୍ତି ତା'ହେଲେ ହୁଏତ ଗୋଟିଏ ଡଙ୍ଗାରେ ସେଇ ରାତିରେ ଜାହାଜରୁ ଖସି ପଳେଇ ଯାଇଥାନ୍ତି । କିମ୍ବା ହୁଏତ ଆଉଥରେ ଭାବିଲେ ମନେହୁଏ ସବୁ ଜାଣିଶୁଣି ବି ଶେଷ ପର୍ଯ୍ୟନ୍ତ ରହିଯାଇଥାନ୍ତି ।

ହଁ, ଗ୍ର୍ୟାଣ୍ଡ କ୍ୟାନାରୀ ଛାଡ଼ିବା ଦିନଠୁଁ ଆରମ୍ଭ କରି ଯାହା ଯାହା ଘଟିଛି କହିବି ।

ବନ୍ଦରରୁ ଜାହାଜ ବାହାରିବା ମାତ୍ରକେ ବନ୍ଧ ମାରାକଟ୍ ଉତ୍ସାହ ଓ ଉତ୍ତେଜନାରେ ଜଳିଉଠିଲେ ଯେମିତି । ଏତେଦିନ ଯିଏ କେବଳ ଚିନ୍ତାକରି ଆସିଛନ୍ତି ସେହି ମନୀଷୀର

ଜୀବନରେ ଶେଷରେ ଆସିଛି କର୍ମର ଶୁଭ ଲଗ୍ନ । ଅବିନ୍ୟସ୍ତ କେଶ, ଅନ୍ୟମନସ୍କତା ଉଭେଇଯାଇ ତା' ସ୍ଥାନରେ ଦେଖାଗଲେ ମନୁଷ୍ୟରୂପୀ ଗୋଟିଏ ବୈଦ୍ୟୁତିକ ଯନ୍ତ୍ର ଯେମିତି ! କୋଉଠି ଥିଲା ଏ ଅସରନ୍ତି କର୍ମଶକ୍ତି ? କୋଉଠି ଥିଲା ଏହି ପ୍ରଚଣ୍ଡ କ୍ଷମତା ? ଲନ୍‌ଠନ୍ ଭିତର ଅଗ୍ନିଶିଖା ଭଳି ତାଙ୍କର ଆଖି ଦୁଇଟି ଚଷମା ଭିତର ଦେଇ ଦେଖାଯାଉଥାଏ । ଏଇଠି ଏଇକ୍ଷଣି ଚାର୍ଟ ଧରି ଦୂରତା ହିସାବ କରୁଛନ୍ତି ତ ପରମୁହୂର୍ତ୍ତରେ ସେଠି କ୍ୟାପ୍‌ଟେନ୍ ସହିତ ହିସାବ ମିଳାଇ ଦେଖୁଛନ୍ତି, କିମ୍ବା ସ୍କାନ୍‌ଲନ୍‌ଙ୍କୁ ନାନା କାମରେ ଲଗାଇ ତାଙ୍କ ପଛେ ପଛେ ଚାଲିଛନ୍ତି ତ, ମୋତେ ଶହେ ସରିକି ଛୋଟ ଛୋଟ କାମରେ ଲଗାଉଛନ୍ତି । କିନ୍ତୁ ଏ ସବୁ ବ୍ୟାପାରରେ ଟିକିଏ ହେଲେ ବିଶୃଙ୍ଖଳା ଭାବ ନାହିଁ, ସବୁରି ଭିତରେ ଗୋଟିଏ ଶୃଙ୍ଖଳା ରହିଛି । ତଡ଼ିତ୍‌ଶକ୍ତି ଓ ଯନ୍ତ୍ର ବିଷୟରେ ହଠାତ୍ ତାଙ୍କର ଏତେ ଜ୍ଞାନ ଦେଖିଲି ଯେ ଆଶ୍ଚର୍ଯ୍ୟ ହୋଇ ଭାବିବାକୁ ଲାଗିଲି, ଏସ୍‌ବୁ କ'ଣ ସେ ଆଗରୁ ଜାଣିଥିଲେ ନା ଏଇମାତ୍ର ଶିଖିପକାଇଲେ । ତାଙ୍କ ତଦାରଖରେ ସ୍କାନ୍‌ଲନ୍ ଏଥର ସେଇ ପିଞ୍ଜରାଟିର ବିଭିନ୍ନ ଅଂଶଗୁଡ଼ିକ ଯୋଡ଼ିବାକୁ ଲାଗିଲେ ।

ଦ୍ୱିତୀୟ ଦିନ ସକାଳେ ସ୍କାନ୍‌ଲନ୍ କହିଲେ, 'ଏଇ ଧରନ୍ତୁ ମିଃ ହେଡ୍‌ଲେ, ଏକଦମ୍ ଖାସ୍ ହୋଇଛି, ଭିତରକୁ ଆସି ଥରେ ଆଖି ପକାନ୍ତୁ । 'ଡିକ୍' ଆମର ଓସ୍ତାଦ ଲୋକ, ଗୋଟିଏ ପକ୍‌କା ଯନ୍ତ୍ରୀ ସେ ।'

ମୋର ମନେହେଲା ମୁଁ ଯେମିତି ମୋର ଶବାଧାରକୁ ଦେଖୁଛି – ଅବଶ୍ୟ ସମାଧି ମନ୍ଦିର ହିସାବରେ ଏହା ମଧ୍ୟ ଉପଯୁକ୍ତ । ଏହାର ଚଟାଣ ଚାରିପାଖର ଚାରି କାନ୍ଥ ସହିତ କ୍ଲାମ୍ପ ଦ୍ୱାରା ଯୋଡ଼ା । ପୋର୍ଟହୋଲ୍ ପାଇଁ ନିର୍ଦ୍ଦିଷ୍ଟ ସ୍ଥାନଗୁଡ଼ିକ କାନ୍ଥ ମଝିରେ ଖଞ୍ଜାହୋଇଛି । ଛାତରେ ଗୋଟାଏ ସ୍ପ୍ରିଂଗ୍‌ର କବାଟ ଲଗାହୋଇଛି, ତାହାହିଁ ଭିତରକୁ ଆସିବା ବାଟ । ଚଟାଣରେ ମଧ୍ୟ ସେମିତି ଗୋଟିଏ କବାଟ । ପିଞ୍ଜରାଟି ତଳିପାରୁ ତାଲୁ ଯାଏ ଇସ୍ପାତରେ ତିଆରି ଏବଂ ତାହା ଇସ୍ପାତ ତାରରେ ତିଆରି ଦଉଡ଼ିରେ ଝୁଲୁଛି । ଦଉଡ଼ିଟି ସରୁ କିନ୍ତୁ ମଜଭୁତ । ଗୋଟାଏ ପ୍ରକାଣ୍ଡ ପୁଲିରେ ସେ ଦଉଡ଼ିଟି ଗୁଡ଼େଇ ହୋଇଅଛି । ଗଭୀର ସମୁଦ୍ରରେ ଟ୍ରଲିଂ କରିବା ପାଇଁ ଯେଉଁ ଶକ୍ତିଶାଳୀ ଇଞ୍ଜିନ୍ ବ୍ୟବହୃତ ହୁଏ ତାରି ଦ୍ୱାରା ପିଞ୍ଜରାକୁ ଉପରକୁ ତଳକୁ କରିବା ବ୍ୟବସ୍ଥା କରାହୋଇଛି । ଶୁଣିଲି ଦଉଡ଼ିଟି ଅଧମାଇଲିଏ ଲମ୍ବ, ତାହାର ବଳକା ଅଂଶଟି ଡେକ୍ ଉପର ଖୁଣ୍ଟରେ ବନ୍ଧା । ପବନ ଯିବା ନଳିଗୁଡ଼ିକ ମଧ୍ୟ ସେତିକି ଲମ୍ବ । ତା' ସହିତ ଟେଲିଫୋନ୍ ତାର ଏବଂ ପିଞ୍ଜରା ଭିତରେ ଆଲୁଅ ଜାଳିବା ତାର ଅଛି । ଅବଶ୍ୟ ଆଲୁଅ ପାଇଁ ପିଞ୍ଜରା ଭିତରେ ଅଲଗା ବନ୍ଦୋବସ୍ତ ବି ଅଛି ।

ସେଇଦିନ ଉପରବେଳା ଜାହାଜର ଇଞ୍ଜିନ୍ ବନ୍ଦକରିଦିଆଗଲା । ବ୍ୟାରୋମିଟର ପାରଦ ଖସିଯାଇଥାଏ । ଦିଗ୍‌ବଳୟରେ ଘନାୟମାନ ଖଣ୍ଡେ କାଳିଆ ମେଘ ଅନର୍ଥର

ସୂଚନା ଦେଉଥିଲା । ନରଓ୍ୱେର ପତାକା ଉଡୁଥିବା ଗୋଟିଏ ଅଝାଲ ଜାହାଜ ଛଡ଼ା ଆଉ କୌଣସି ଜାହାଜ ଆମର ଦୃଷ୍ଟିଗୋଚର ହେଉନଥିଲା । ତାହାର ପାଲଗୁଡ଼ିକ ଓହ୍ଲାଇ ଦିଆଯାଇଥିଲା । ବୁଝିପାରିଲି ଏହା ଝଡ଼ ପାଇଁ ପ୍ରସ୍ତୁତି । ଅବଶ୍ୟ ଠିକ୍ ସେଇ ସମୟରେ ସବୁ ଭଲ ଥିଲା । ବାଣିଜ୍ୟ ବାୟୁର ସ୍ପର୍ଶରେ ଘନନୀଳ ସମୁଦ୍ର ଧଳା ଫେଣର ମୁକୁଟ ମଣ୍ଡିତ ଉର୍ମିମାଳା ଦ୍ୱାରା ତରଙ୍ଗାୟିତ ହେଉଥାଏ । ଏହି ସମୟରେ ବିଲ୍ ସ୍କାନ୍‌ଲନ୍ ଉତ୍ତେଜିତ ଭାବରେ ପରୀକ୍ଷାଗାରକୁ ପ୍ରବେଶ କଲେ । ତାଙ୍କଠାରେ ଏପରି ଉତ୍ତେଜନା କେବେହେଁ ଦେଖିନଥିଲି । ସେ କହିଲେ, 'ଏଇ ଧରନ୍ତୁ, ମି: ହେଡ୍‌ଲେ, ସେଇ ଅଜବ କାରଖାନାଟିକୁ ତ ଜାହାଜ ତଳେ ଥିବା କୂଅ ଭଳି ଗୋଟିଏ ଗାତ ଭିତରକୁ ଓହ୍ଲାଇ ଦିଆଗଲା—କିନ୍ତୁ କର୍ତ୍ତା ମହାଶୟ କ'ଣ ତା' ସାହାଯ୍ୟରେ ବୁଡ଼ିବେ ନା କ'ଣ ?'

'ଅଲବତ୍ ବିଲ୍, ଆଉ ମୁଁ ବି ତାଙ୍କ ସହିତ ବୁଡ଼ିବି ।'

'ଆଚ୍ଛା ଆଚ୍ଛା ! ଆପଣ ଦି'ଜଣଙ୍କ ମୁଣ୍ଡ ଯେ ବିଲକୁଲ୍ ଖରାପ ସେଥିରେ ସନ୍ଦେହ ନାହିଁ । କିନ୍ତୁ ଆପଣମାନଙ୍କୁ ଏକା ଯିବାକୁ ଦେବି, ମୁଁ ସେଭଳି ମଣିଷ ନୁହେଁ ।'

'ଆରେ, ତୁମର ସେଥିରେ ମୁଣ୍ଡ ପୂରାଇବା କି ଦରକାର ?'

'କିଛି ଅଛି । ଆପଣମାନେ ଏକା ଗଲେ ହିଂସାରେ ମୁଁ ଚୀନା ଲୋକ ଭଳି ହଳଦିଆ ପଡ଼ିଯିବ । ମେରିବ୍ୟାଙ୍କ୍ କମ୍ପାନ ମୋତେ ପଠାଇଚି ଏହି ସବୁ କଳକବ୍‌ଜା ଦେଖାଶୁଣା କରିବାକୁ । ସେ ସବୁ ଯଦି ରହିବେ ଦରିଆତଳେ ତେବେ ମୋର ବି ସ୍ଥାନ ସେଇଠି ।'

ତା' ସହିତ ତର୍କ କରିବା ବୃଥା, ଫଳତଃ ସେ ମଧ୍ୟ ଆମର କ୍ଷୁଦ୍ର ଆତ୍ମଘାତୀ ସମିତିର ଆଉ ଗୋଟିଏ ସଭ୍ୟ ହେଲା । ବର୍ତ୍ତମାନ କେବଳ ହୁକୁମ ହେଲେ ହେଲା ।

ରାତି ସାରା ପୂରାଦମ୍‌ରେ କାମ କରି ସବୁ ଯୋଖାଯୋଖି ସରିଲା । ପରଦିନ ସହଳ ବ୍ରେକଫାଷ୍ଟ୍ ଖାଇ ଅଭିଯାନ ପାଇଁ ପ୍ରସ୍ତୁତ ହୋଇ ଆମେ ଜାହାଜ ଖୋଲକୁ ଓହ୍ଲାଇଲୁ । ପିଞ୍ଜରାଟି ଜାହାଜର ନକଲି ତଳଭାଗ ଭିତରେ ଅଧେ ଓହ୍ଲାଇ ଦିଆହୋଇଥାଏ । ପିଞ୍ଜରାର ଉପର ପଟ ସ୍ପ୍ରିଂର କବାଟ ବାଟେ ଆମେ ଜଣ ଜଣ ହୋଇ ତା' ଭିତରେ ପଶିଲୁ । କ୍ୟାପ୍‌ଟେନ୍ ହାଓୟି ମହା ବିମର୍ଷ ଭାବରେ ଆମ ସହିତ କରମର୍ଦ୍ଦନ କଲେ । ପିଞ୍ଜରା ସହିତ ଆମକୁ ଆହୁରି କେତେଫୁଟ ତଳକୁ ଓହ୍ଲାଇ ଦିଆଗଲା । ତା' ପରେ ଜାହାଜର ନକଲି ତଳ ଭାଗର କବାଟ ଖୋଲି ଭିତରକୁ ପାଣି ଛାଡ଼ି ଆମ ପିଞ୍ଜରାଟି କେତେ ଦୂର ସମୁଦ୍ରଯୋଗ୍ୟ ପରଖି ଦେଖାଗଲା । ପ୍ରତ୍ୟେକଟି ଯୋଡ଼ ଠିକ୍ ଖାପକୁ ଖାପ ଲାଗିଛି, କୌଣସି ଆଡୁ ପାଣି ପଶିବାର କୌଣସି ଲକ୍ଷଣ ଦେଖାଗଲା ନାହିଁ । ତା'ପରେ ଜାହାଜ ଖୋଲର ତଳପଟ କବାଟ ଖୋଲିଦିଆଗଲା । ଆମେ ଜାହାଜ ତଳେ ସମୁଦ୍ର ପାଣି ଭିତରେ ଝୁଲିବାକୁ ଲାଗିଲୁ ।

ସେଇ ସାନ ପିଞ୍ଜରାଟି ବାସ୍ତବିକ ଖୁବ୍ ଆରାମଦାୟକ–ଆଉ ତା' ଭିତରର ବ୍ୟବସ୍ଥା ଏତେ ସୁପରିକଳ୍ପିତ ଯେ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ପ୍ରଶ୍ନ ଜାଗେ ଯିଏ ଏ ସବୁ କରିଛନ୍ତି ସେ ଆଗରୁ ସବୁ କଥା ଭାବିଲେ ଚିନ୍ତିଲେ କିପରି ! ବିଜୁଳି ଆଲୁଅଗୁଡ଼ିକ ସେ ପର୍ଯ୍ୟନ୍ତ ଜଳାହୋଇନି । ସେ ସ୍ଥାନଟି ଗ୍ରୀଷ୍ମମଣ୍ଡଳର ନିକଟବର୍ତ୍ତୀ ବୋଲି ସୂର୍ଯ୍ୟାଲୋକ ଯଥେଷ୍ଟ–ସେ ପର୍ଯ୍ୟନ୍ତ ବି ମୋଟା କାଚ ଭଳି ସବୁଜ ପାଣି ଭିତର ଦେଇ ଆମର ପୋର୍ଟହୋଲ୍ ଉପରେ ପଡୁଥାଏ । କେତେଗୁଡ଼ିଏ ଛୋଟ ଛୋଟ ମାଛ ସବୁଜ ପାଣି ଭିତରେ ରୂପେଲି ଗାର କାଟି ବୁଲୁଥାନ୍ତି । ଆମ ଘର କାନ୍ଥର ଠିକ୍ ଚାରିପଟେ ଗୋଲ ଭାବରେ ଗୋଟିଏ 'ସେଟି' ଫିଟ୍ କରାହୋଇଛି । ତା' ଉପରେ କାନ୍ଥ ଦେହରେ ଗଭୀରତାଜ୍ଞାପକ ଯନ୍ତ୍ର, ଉଷ୍ଣତାମାପକ ବା ଥର୍ମୋମିଟର ଓ ଅନ୍ୟାନ୍ୟ ସବୁ ଯନ୍ତ୍ର ଧାଡ଼ି ଧାଡ଼ି ସଜା ହୋଇ ରହିଛି । 'ସେଟି' ତଳେ ଧାଡ଼ିଏ ସରୁ ସରୁ ନଳି ମଧରେ ସଂପ୍ରେଷିତ ବାୟୁ ଅର୍ଥାତ୍ ଅଳ୍ପ ସ୍ଥାନ ଭିତରେ ଖୁବ୍ ଠେସିଠୁସି ଭରତି କରାହୋଇ ବହୁତ ପବନ ରହିଚି । ଜାହାଜରୁ ପବନ ଆଣିବା ନଳିଗୁଡ଼ିକ କୌଣସି କାରଣରୁ ଅକାମୀ ହୋଇଗଲେ ଏଇ ନଳି ଭିତରେ ଥିବା ପବନ ହେବ ଆମର ସମ୍ବଳ । ବଡ଼ ନଳଗୁଡ଼ିକ ଠିକ୍ ଆମର ମୁଣ୍ଡ ଉପରୁ ବାହାରିଛି । ପାଖରେ ଅଛି ଟେଲିଫୋନ୍ । ସେଥିରେ କ୍ୟାପ୍‌ଟେନ୍‌ଙ୍କ ବିଷଣ୍ଣ କଣ୍ଠସ୍ୱର ଶୁଣିବାକୁ ମିଳିଲା ।

'ଆପଣମାନେ କ'ଣ ଯିବା ନିଶ୍ଚୟ ବୋଲି ସିଦ୍ଧାନ୍ତ କଲେ ?'

ଡାକ୍ତର ଅସହିଷ୍ଣୁ ଭାବରେ ଉତ୍ତର ଦେଲେ, 'ଆମେ ଠିକ୍ ଅଛୁ । ଆପଣ ଧୀରେ ଧୀରେ ଓହ୍ଲାଇ ଦିଅନ୍ତୁ, ଆଉ ଟେଲିଫୋନ୍ ପାଖରେ ସର୍ବଦା ଜଣକୁ ରଖିବେ । କେଉଁ ସମୟରେ ଆମର ଅବସ୍ଥା କ'ଣ ଜଣାଉଥିବି । ଆମେ ତଳ ଦେଶରେ ପହଞ୍ଚିବା ପରେ ମୋର ନିର୍ଦ୍ଦେଶ ପାଇବା ପର୍ଯ୍ୟନ୍ତ ଆପଣମାନେ ଯେମିତି ଅଛନ୍ତି ସେମିତି ଥିବେ । ଦଉଡ଼ି ଉପରେ ଅଧିକ ଜୋର ନ ପଡ଼େ ଯେମିତି, ଧୀରେ–ଘଣ୍ଟାରେ ଦୁଇନଟ୍ ହିସାବରେ ଗଲେ ଦଉଡ଼ି ଯଥେଷ୍ଟ ସହିପାରିବ । ଏଥର ଖସାଇ ଯାଆନ୍ତୁ ।

ଏହି 'ଖସାଇ ଯାଆନ୍ତୁ' ଶବ୍ଦ ଦୁଇଟି ସେ କହିଲେ ପାଗଳ ଭଳି ଚିତ୍କାର କରି । ତାଙ୍କ ଜୀବନର ଚୂଡ଼ାନ୍ତ ମୁହୂର୍ତ୍ତ ଉପସ୍ଥିତ । ତାଙ୍କର ସମସ୍ତ ସ୍ୱପ୍ନ ସାର୍ଥକ । ଆଜି କିନ୍ତୁ ଆମେ ଗୋଟିଏ ଧୂର୍ତ୍ତ ପାଗଳ ହାତରେ ପଡ଼ିଚୁ ଏହା ମନେହୋଇ ମୋ ଛାତି ମୁହୂର୍ତ୍ତକ ପାଇଁ ଥରିଉଠିଲା । ସ୍କାନ୍‌ଲନ୍‌ଙ୍କ ମଧ ଏଇ କଥା ମନକୁ ଆସିଥିଲା ବୋଧହୁଏ । ସେ ମୋ ଆଡ଼କୁ ଚାହିଁ ଅତି ବିଷଣ୍ଣ ଭାବରେ ହସି କପାଳରେ ହାତଛୁଆଁଇଲେ । ତାପରେ ମାରାକଟ୍‌ଙ୍କୁ ଦେଖିଲି –ସେ ପୁଣି ସେହି ଶାନ୍ତ ସଂଯତ ବିଜ୍ଞାନସାଧକ ପାଲଟି ଯାଇଛନ୍ତି ।

ବର୍ତ୍ତମାନ ପ୍ରାୟ ପ୍ରତ୍ୟେକ ମୁହୂର୍ତ୍ତରେ ଆମେ ଯେଉଁସବୁ ଆଶ୍ଚର୍ଯ୍ୟଜନକ ନୂଆ ନୂଆ ଜିନିଷ ଦେଖିବାକୁ ଲାଗିଲୁ ସେଥିରେ ଅନ୍ୟ କଥା ଭାବିବାକୁ ଆଉ ସମୟ

ନଥିଲା । ଧୀରେ ଧୀରେ ଆମେ ଗଭୀର ସ୍ତରରୁ ଗଭୀରତର ସ୍ତରକୁ ଓହ୍ଲାଇବାକୁ ଲାଗିଲ୍ । ପାଣିର ପତଳା ସବୁଜ ରଙ୍ଗ କ୍ରମେ ଗାଢ଼ ସବୁଜ ହେବାକୁ ଲାଗିଲା । ତାହା ପୁଣି ହୋଇଗଲା ଚମତ୍କାର ନୀଳ, ତା'ପରେ ଗାଢ଼ନୀଳ । କ୍ରମେ ତାହା ଆହୁରି ଗାଢ଼ ହୋଇ କାଳିଆ ବାଇଗଣି ରଙ୍ଗର ହେଲା । କ୍ରମଶଃ ଆମେ ଆହୁରି ତଳକୁ ଖସିବାକୁ ଲାଗିଲୁ–ଶହେ ଫୁଟ, ଦୁଇଶହ, ତିନିଶହ । ଜାହାଜରୁ ପବନ ପମ୍ପକରି ଆମ ପାଖକୁ ପଠାହେଉଥିଲା । ପବନ ନଳିର ଭାଲ୍‌ଭ୍‌ଗୁଡ଼ିକ ନିଖୁଣ ଭାବରେ କାମ କରୁଥାଏ । ପୁଣି ଭିତରେ ଏତେ ତଳେ ଥାଇ ମଧ ଜାହାଜ ଡେକ୍ ଉପରେ ଥିବା ଭଳି ସହଜ ଓ ସ୍ୱାଭାବିକ ଭାବରେ ନିଃଶ୍ୱାସ ନେଇପାରୁଥିଲୁ । ଗଭୀରତାମାପକ ଯନ୍ତ୍ରର ଡାଏଲ ଉପରେ ଯନ୍ତ୍ରର କଣ୍ଟା ଆସ୍ତେ ଆସ୍ତେ ଚାଲୁଥାଏ–ଚାରିଶହ ଫୁଟ୍–ପାଞ୍ଚଶହ–ଛ'ଶହ । ଟେଲିଫୋନ୍ ବୋହି ଆଣିଲା ଉଦ୍‌ବିଗ୍ନ କଣ୍ଠର ସ୍ୱର 'କେମିତି ଅଛନ୍ତି ଆପଣମାନେ ?'

ମାରାକଟ୍ ପାଟିକରି ଉତ୍ତର ଦେଲେ, 'ଖୁବ୍ ଭଲ' । ସେତେବେଳେକୁ ଆଲୁଅ ଅନେକ କମିଯାଇଥାଏ, ଅସ୍ପଷ୍ଟ ଗୋଧୂଳି ଭଳି । ଆଉ ଟିକିଏ ପରେ ପୂରା ଅନ୍ଧାର ହୋଇଗଲା । ମାରାକଟ୍ ପାଟିକରି ଉଠିଲେ– 'ରଖ' । ପିଞ୍ଜରାଟି ସ୍ଥିର ହେଲା, ଆଉ ଆମେ ଗଭୀର ସମୁଦ୍ରରେ ସାତଶହ ଫୁଟ ତଳେ ଝୁଲିବାକୁ ଲାଗିଲା । 'କ୍ଲିକ୍' କରି ବୋତାମ ଟିପିବା ମାତ୍ରେ ଶକ୍ତିଶାଳୀ ସୁନେଲି ଆଲୁଅରେ ଘରଟି ଭରିଗଲା । ପୋର୍ଟହୋଲ୍ ବାଟେ ଚାରିଆଡ଼ର ଅସୀମ ଜଳରାଶି ଭିତରେ ବହୁଦୂର ପର୍ଯ୍ୟନ୍ତ ଚାଲିଗଲା ସେ ଆଲୋକର ସୁଦୀର୍ଘ ରେଖା । ନିଜ ନିଜ ଝରକାର ମୋଟାକାଚରେ ଆଖି ଥାପି ଯେଉଁ ଦୃଶ୍ୟ ଆମେ ଦେଖିବାକୁ ପାଇଲୁ ମଣିଷ ତା' କଦାପି ଦେଖିନାହିଁ ।

ଏ ପର୍ଯ୍ୟନ୍ତ ସମୁଦ୍ରର ଏଇ ସବୁ ଗଭୀର ସ୍ତରର ଯେଉଁ ସାମାନ୍ୟ ଖବର ଆମେ ପାଇଛୁ ତାହା କେବଳ ସେହି ସ୍ତରର ମାଛମାନଙ୍କ ଜରିଆରେ । ତା' ମଧ ସବୁ ମାଛ ନୁହେଁ, କେବଳ ସେଇ ମାଛ ଯେଉଁମାନେ ଆମର ଟ୍ରଲରର ମୁହଁ କିମ୍ବା ଟଣା ଜାଲ ଏଡ଼ାଇଯିବା ଭଳି ଚାଲାକ ବା କ୍ଷିପ୍ର ନୁହନ୍ତି । ଏଇ ଜଳଜଗତ ଯେ ବାସ୍ତବିକ କେଡ଼େ ଆଶ୍ଚର୍ଯ୍ୟଜନକ ତା' ଆମେ ବର୍ତ୍ତମାନ ଦେଖିବାକୁ ପାଇଲୁ । ଯଦି ବିଶ୍ୱସୃଷ୍ଟିର ଉଦ୍ଦେଶ୍ୟ ହୁଏ ମନୁଷ୍ୟ ସୃଷ୍ଟି, ତେବେ ସ୍ଥଳଠାରୁ ସମୁଦ୍ରର ଏତେ ଗଭୀର ଦେଶରେ ପ୍ରାଣୀ କାହିଁକି ଏତେ ବେଶି ତା' ବୁଝିହୁଏନା । ଆଉ ବୈଚିତ୍ର ବି କେତେ ! ସମୁଦ୍ରର ଉପରସ୍ତର ମାଛର ହୁଏତ କୌଣସି ରଙ୍ଗ ନାହିଁ, ନୁହେଁତ ଉପରଟା ନୀଳ ଓ ତଳଟା ରୁପେଲି । ସେ ସବୁ ସ୍ତର ଆମେ ପାରି ହୋଇ ଆସିଥାଉଁ । କଳ୍ପନାରେ ଯେତେ ପ୍ରକାର ରଙ୍ଗ ଓ ଯେତେପ୍ରକାର ଆକୃତି ସମ୍ଭବ ସେ ସବୁ ଅଛି ଏହି ତଳଦେଶର ମାଛମାନଙ୍କ ମଧ୍ୟରେ । ଅତି ସୁକୁମାର କୃଶକରୋଟିକା–ଭାରି ଅଦ୍ଭୁତ ନାମ, ନୁହେଁ ?–ରୂପେଲି ଝଲକ ସୃଷ୍ଟିକରି

ତୀର ଭଳି ପାଣିର ଆଲୋକିତ ଅଂଶଟି ପାରିହୋଇଯାଉଥାନ୍ତି । କେଉଁଠି ହୁଏତ ଏକ ଜାତିର ଲ୍ୟାମ୍‌ପ୍ରେ (Lamprey) ତା'ର ସାପ ଭଳି ଶରୀର ନେଇ ମୋଡ଼ିମାଡ଼ି ହେଉଥାଏ । ଆଉ କେଉଁଠି ମୁଖସର୍ବସ୍ୱ କାନ୍ଦିଆ ସିରାଟିଆ (Ceratia) ସର୍ବାଙ୍ଗ କଣ୍ଟକାବୃତ ଶରୀର ନେଇ ହାଁ କରି ଅନେଇଁ ରହିଛି ବୋକାଭଳି । କେଉଁଠି ହୁଏତ ବାଙ୍ଗରା ମୋଟା କଟ୍‌ଲ-ଫିଶ୍ (Cuttle fish) ଚାଲିଯାଉଯାଉ ତା'ର ମଣିଷ ଭଳିଆ ଆଖିରେ ଯେମିତି ଅମଙ୍ଗଳ ଦୃଷ୍ଟି ପକାଇ ଆମକୁ ଅନାଇଛି । କେତେବେଳେ ବା କାଚଭଳି ସ୍ୱଚ୍ଛଦେହ ଗ୍ଲକସ୍ (Glaucus) ତାହାର ଫୁଲ ଭଳି ଆକାର ଦ୍ୱାରା ଚାରିଆଡ଼ର ଶୋଭା ବର୍ଦ୍ଧନ କରୁଛି । ଗୋଟିଏ ପ୍ରକାଣ୍ଡ ହର୍ସ ମ୍ୟାକାରେଲ୍ (Horse-mackerel) ଆମ ଝରକାରେ ବାରମ୍ବାର ଧକ୍‌କା ମାରିବାକୁ ଲାଗିଲା । ହଠାତ୍ ଗୋଟିଏ ସାତ ଫୁଟ୍ ଲମ୍ବର ମଗର ଆସି ଉପସ୍ଥିତ ହେଲା ଓ ତାହାର ପାଟିଭିତରେ ମାଛଟି ଅନ୍ତର୍ଦ୍ଧାନ ହେଲା । ଆଣ୍ଠୁ ଭିତରେ ଟିପାଖାତା ରଖି ମାରାକଟ୍ ମନ୍ତ୍ରମୁଗ୍ଧ ଭଳି ବସିରହିଛନ୍ତି ଓ ଯାହା ଯାହା ଦେଖୁଛନ୍ତି ସବୁ ଟିପିରଖୁଛନ୍ତି ଏବଂ ବୈଜ୍ଞାନିକ ଟିପ୍‌ପଣୀମାନ ଅସ୍ପଷ୍ଟଭାବରେ ଏକତରଫା କହିଯାଉଛନ୍ତି ।

ଏହିପରି କିଛି ସମୟ ଲକ୍ଷ୍ୟକଲାପରେ ମାରାକଟ୍ ଟେଲିଫୋନ୍‌ରେ ପାଟି କରି କହିଲେ, 'ସବୁ ଠିକ୍ ଅଛି, କ୍ୟାପ୍‌ଟେନ୍ । ଆମକୁ ଖସାଇ ଦେଇ ପାରନ୍ତି ଆହୁରି ।'

ଆମେ ପୁଣି ଖସିବାକୁ ଲାଗିଲୁ । ଡ: ମାରାକଟ୍ ଆଲୁଅ ଲିଭାଇଦେଲେ । ସବୁ ପୁଣି ନିବିଡ଼ ଅନ୍ଧକାର, କେବଳ ଗଭୀରତାମାପକ ଯନ୍ତ୍ରର ଆଲୋକିତ ଡାଏଲ୍‌ଟି ଆମର କ୍ରମନିମ୍ନଗତ ନିର୍ଦ୍ଦେଶ କରିଚାଲିଛି । ସାମାନ୍ୟ ଦୋଳନ ଛଡ଼ା ଆମେ ଯେ ଗତିଶୀଳ ତା' ବୁଝିବାର ଆଉ କୌଣସି ଉପାୟ ନଥିଲା । ଆମେ ଯେତେବେଳେ ହଜାରେଫୁଟ ତଳେ ସେତେବେଳେ ସ୍ପଷ୍ଟ ମନେହେଲା ପିଞ୍ଜରାର ବାୟୁ ଦୂଷିତ ହୋଇଯାଇଛି । ସ୍କାନ୍‌ଲନ୍ ନଳର ଭାଲ୍‌ଭ୍‌ଗୁଡ଼ିକରେ ତେଲ ଦେଇ ଅବସ୍ଥା ସୁଧାରିନେଲେ ।

ଦେଢ଼ହଜାର ଫୁଟକୁ ଆସି ଆମେ ଗତ ବନ୍ଦ କଲୁ । ଆଲୁଅଗୁଡ଼ିକ ପୁଣି ଜାଳିଦିଆଗଲା । କାଳିଆହୋଇ କ'ଣ ଗୋଟାଏ ପ୍ରକାଣ୍ଡଜୀବ ଆମ କଡ଼ ଦେଇ ଚାଲିଗଲା । କିନ୍ତୁ ସେଟା ଗଭୀର ସମୁଦ୍ରର ଏକ ମଗର ନା ଅନ୍ୟ କୌଣସି ଅଜଣା ଜୀବ ତା' ଆମେ ସ୍ଥିର କରିପାରିଲୁନାହିଁ । ଡକ୍‌ଟର ହଠାତ୍ ଆଲୁଅଗୁଡ଼ିକ ଲିଭାଇ ଦେଲେ । ସେ କହିଲେ, 'ଏହାହିଁ ଆମର ଅସଲ ଭୟ । ଗଭୀର ସମୁଦ୍ରରେ ଏପରି ଜୀବ ଅଛନ୍ତି ଯେଉଁମାନଙ୍କ ଭିତରୁ କୌଣସି ଗୋଟିକର ଆକ୍ରମଣରେ ଆମର ଏଇ ଇସ୍ପାତର ଘରଟିର ଅବସ୍ଥା ଗଣ୍ଡାର ଆକ୍ରମଣରେ ମହୁଫେଣା ଭଳି ହୋଇପାରେ ।'

ସ୍କାନ୍‌ଲନ୍ କହିଲେ, 'ତିମି ହେବ ପରା ।'

ମାରାକଟ୍ କହିଲେ, 'ଅବଶ୍ୟ ତିମି ଅନେକ ତଳକୁ ଓହ୍ଲାଇପାରେ । ଥରେ ଗ୍ରୀନଲ୍ୟାଣ୍ଡର ଗୋଟାଏ ତିମି ହାରପୁନ୍ (Harpoon) ର ଆଘାତରେ ସିଧା ତଳ ଆଡ଼କୁ ବୁଡ଼ିଯାଇ ପ୍ରାୟ ମାଇଲିଏ ଦଉଡ଼ି ଟାଣିନେଇଥିଲା; କିନ୍ତୁ ବେଶି ଆଘାତ ବା ଭୟ ନ ପାଇଲେ କୌଣସି ତିମି ଏତେ ତଳକୁ ଆସେ ନାହିଁ । ଏଟା ହୁଏତ ଗୋଟାଏ ଅତିକାୟ ସ୍କୁଇଡ୍; ସବୁ ସ୍ତରରେ ଏମାନଙ୍କୁ ଦେଖିବାକୁ ମିଳେ ।'

ମୁଁ କହିଲି, 'ସ୍କୁଇଡ୍ ତ ନିହାତି ନରମ । ମେରିବ୍ୟାଙ୍କ୍ କଂପାନିର ନିକେଲ୍-ଇସ୍ପାତରେ ଯଦି କଣା କରିଦେଇପାରେ ତ ତାକୁ ସାବାସି ଦେବା ଉଚିତ ।'

ମାରାକଟ୍ କହିଲେ, 'ସ୍କୁଇଡ୍‌ର ଶରୀର ନରମ ହୋଇପାରେ, କିନ୍ତୁ ଗୋଟାଏ ବଡ଼ ସ୍କୁଇଡ୍‌ର ଗୋଜା ମୁହଁରେ ଲୁହାର ଛଡ଼ କଟିଯାଇପାରେ । ସେଇ ମୁହଁର ଗୋଟିଏ ମାତ୍ର ଆଘାତରେ ଏହି ଇଞ୍ଚେ ମୋଟର କାଚ କାଗଜ ଭଳି କଣାହୋଇଯିବ ।' ଏହା ଶୁଣି ଆମର ବିସ୍ମୟର ସୀମା ରହିଲା ନାହିଁ । ଏହାପରେ ଆମର ପିଞ୍ଜରାଟି ପୁଣି ଚାଲିବାକୁ ଲାଗିଲା । କିଛିକ୍ଷଣ ପରେ ଗୋଟିଏ ସାମାନ୍ୟ ଝାଙ୍କି ପରେ ଆମେ ବନ୍ଦହେଲୁ । ଝାଙ୍କିଟି ଏତେ ଧୀର ଯେ ଆମେ ହୁଏତ ତାହା ଅନୁଭବ କରିନଥାନ୍ତୁ ଯଦି ଆଲୁଅ ଜାଳି ଦେଖିନଥାନ୍ତୁ ଯେ ଯେଉଁ ଲୁହାଦଉଡ଼ିରେ ଆମ ପିଞ୍ଜରା ଝୁଲୁଥିଲା ତାହା ପିଞ୍ଜରା ଚାରିପଟରେ ଢିଲା ହୋଇ ପରସ୍ତ ପରସ୍ତ ହୋଇରହିଛି । ଆମର ପବନ ନଳି ତା' ସହିତ ଗୁଡ଼େଇ ହୋଇଯିବାର ଭୟରେ ମାରାକଟ୍ ଟେଲିଫୋନ୍‌ରେ ଚିତ୍କାର କରି ନିର୍ଦ୍ଦେଶ ଦେଲେ ହଉଡ଼ିଟିକୁ ଟାଣି ଧରିବାକୁ । ଯନ୍ତ୍ରରେ ଦେଖାଗଲା ଅଠରଶହ ଫୁଟ । ଆଟଲାଣ୍ଟିକ୍ ମହାସାଗରର ତଳେ ଗୋଟିଏ ଶୈଳଶିରା ଉପରେ ଆମେ ସ୍ଥିର ଭାବରେ ଏବେ ଦଣ୍ଡାୟମାନ ।

## ତିନି

କିଛି ସମୟ ପାଇଁ ବୋଧହୁଏ ସମସ୍ତଙ୍କ ମନର ଭାବ ଏକା ପ୍ରକାର ହେଲା । କିଛି ଦେଖିବାର ବା କରିବାର ଚେଷ୍ଟା ନକରି ଆମେ ଚୁପ୍‌କରି ବସି ମନେ ମନେ ଅନୁଭବ କରିବାକୁ ଲାଗିଲୁ ସେଇ ଅନିର୍ବଚନୀୟ ବିସ୍ମୟ ଆମ ପିଞ୍ଜରାଟି ଯେଉଁଠି ଓହ୍ଲାଇଥିଲା ସେଠି ଚାରିଆଡ଼େ ବଡ଼ ବଡ଼ ସାମୁଦ୍ରିକ ଦଳ । ତା'ର ଲମ୍ୱା ଲମ୍ୱା ହଳଦିଆ ପତ୍ରଗୁଡ଼ିକ ସମୁଦ୍ରତଳର କୌଣସି ସ୍ରୋତରେ ଧୀରେ ଧୀରେ ଦୋହଲୁଥାଏ, ଠିକ୍ ଯେପରି ଦକ୍ଷିଣା ପବନରେ ଗଛର ପତ୍ରଗୁଡ଼ିକ ଦୋହଲେ । ଏଠାକାର ଏଇ ଜୀବନ୍ତ ଫୁଲଗୁଡ଼ିକର କେତେ ପ୍ରକାର ରଙ୍ଗ—ଟହଟହ ଲାଲ, ଫିକାଲାଲ, ଜୀବନ୍ତ ଫୁଲ ସେ ସବୁ ବିଛାଡ଼ି ରହିଛି ଏକ ନିପଟ କଳା ପୃଷ୍ଠପଟ ଉପରେ । ଗୋଟାଏ ଗୋଟାଏ ବିରାଟ ସ୍ପଞ୍ଜ (sponge) ସେହି କଳା ଢ଼ିପ ଜାଗାରେ ଏଠି ସେଠି ଥିବା ଗାତ

ଭିତରୁ ଦେହ ବାହାର କରି ରହଛି । ସେ ଯେମିତି ଗୋଟିଏ ପରୀ ରାଇଜ ! ଆମେ ସେଇ ଅପରୂପ ଦୃଶ୍ୟ ଦେଖୁ ଦେଖୁ ଏକଦମ୍ ମଜ୍ଜଯାଇଛୁ; ଏପରି ସମୟରେ ଟେଲିଫୋନ୍‌ରେ କ୍ୟାପ୍‌ଟେନ୍‌ଙ୍କ ଉଦ୍‌ବିଗ୍ନ କଣ୍ଠସ୍ୱର ଶୁଣାଗଲା–କେମିତି ଲାଗୁଚ ତଳ ଟା ? ସବୁ ଭଲତ ? ବେଶି ଡେରି କରିବେ ନାହିଁ । ବ୍ୟାରୋମିଟର ଖସୁଛି, ଆକାଶର ଚେହେରାଟା ବି ସୁଖକର ନୁହେଁ । ଯଥେଷ୍ଟ ପବନ ଯାଉଚି ତ ? ଆଉ କ'ଣ ସାହାଯ୍ୟ କରିପାରେ ?'

ମାରାକଟ୍ ପାଟିକରି ଉତ୍ତରଦେଲେ, 'ସବୁ ଠିକ୍ ଅଛି, କ୍ୟାପ୍‌ଟେନ୍ ! ଆମେ ଡେରି କରିବୁ ନାହିଁ । ଆପଣ ଯଥେଷ୍ଟ ପବନ ପିଆଉଛନ୍ତି । ଠିକ୍ ନିଜ କ୍ୟାବିନ୍‌ରେ ରହିବାଭଳି ଆରାମରେ ଅଛୁ । ଏଥର ଆସ୍ତେ ଆମକୁ ଆଗେଇ ନିଅନ୍ତୁ ।'

ସମୁଦ୍ରତଳ ଏତେ ଅନ୍ଧାର ଯେ ଫୋଟୋଗ୍ରାଫ୍‌ର ପ୍ଲେଟ ଘଣ୍ଟାଏ ପର୍ଯ୍ୟନ୍ତ ମେଲି ରଖିଲେ ବି ଆଲୁଅର କୌଣସି ଚିହ୍ନ ମିଳିବ ନାହିଁ । କିନ୍ତୁ ଆମେ ସେତେବେଳେ ଭାସ୍ୱର ମାଛର ସ୍ତରରେ ଆସି ପହଞ୍ଚିଲୁ । ସେମାନଙ୍କ ନିଜ ଦେହରୁ ଆଲୁଅ ବାହାରେ । ଏହି ଆଲୁଅକୁ ବିଜ୍ଞାନ ଭାଷାରେ କହନ୍ତି ଅନୁପ୍ରଭା । ଆମ ନିଜର ଆଲୁଅ ଲଭାଇଦେଇ ସେଇ କଳାହାଣ୍ଡିଆ ଅନ୍ଧାର ଭିତରେ ସମୁଦ୍ରର ଏଇ ଜୀବନ୍ତ ଅନୁପ୍ରଭାର କ୍ରୀଡ଼ା ଦେଖିବାକୁ ଭାରି ମଜା ଲାଗୁଥିଲା । ଯେମିତି କଳା ମଖମଲ ପର୍ଦା ଉପରେ ଅନେକଗୁଡ଼ିଏ ଆଲୋକ ବିନ୍ଦୁ ଚଲାବୁଲା କରୁଚନ୍ତି । ଗୋଟାଏ ବିକଟ ଜନ୍ତୁର ଦାନ୍ତରେ ଏପରି ଅନୁପ୍ରଭା ! କାହାର ବା ଦୁଇଟି ଲମ୍ୱା ସୁନେଲି ରଙ୍ଗର ଉଜ୍ଜ୍ୱଳ ଶୁଣ୍ଢ, ଆଉ କାହାର ମୁଣ୍ଡରେ ହୁଏତ ଜ୍ୱଳନ୍ତ ନିଆଁଭଳି ଚୁଟି । ଆଖି ପାଉଥିବା ପର୍ଯ୍ୟନ୍ତ ଅନ୍ଧାର ଭିତରେ ଅଗଣିତ ଉଜ୍ଜ୍ୱଳ ବିନ୍ଦୁ, ଯେ ଯାହାର ଧନ୍ଦାରେ ଘୂରି ବୁଲୁଛନ୍ତି । ଟିକିଏ ପରେ ଆମର ଆଲୁଅଗୁଡ଼ିକୁ ପୁଣି ଜାଳିଦିଅଗଲା । ଡକ୍ଟର ତାଙ୍କର ସମୁଦ୍ର ନିରୀକ୍ଷା ଆରମ୍ଭ କଲେ ।

ସେ କହିଲେ, 'ଆମେ ଅବଶ୍ୟ ଅନେକ ତଳକୁ ଆସଚୁ, କିନ୍ତୁ ସମୁଦ୍ରର ଅନ୍ତଃସ୍ଥଳରେ ଯେଉଁ ବିଶେଷ ପ୍ରକାରର ସ୍ତର ଅଛି ତା' ଦେଖିପାରିବା ଭଳି ଯଥେଷ୍ଟ ତଳକୁ ଆସିନାହୁଁ । ସେ ସ୍ତରସବୁ ବର୍ତ୍ତମାନ ଅପହଞ୍ଚ । ହୁଏତ ପରେ ଆହୁରି ଲମ୍ୱା ଦଉଡ଼ି–,

'ସେ କଥା ଥାଉ–ବର୍ତ୍ତମାନ ଭୁଲିଯାନ୍ତୁ ସେ କଥା !' ବିଲ୍ ଗରଗର ହୋଇ କହିଲା ।

ମୃଦୁ ହସି ମାରାକଟ୍ କହିଲେ, 'ସମୁଦ୍ର ଗର୍ଭର ଅନ୍ଧକାର ଶୀଘ୍ର ସହି ହୋଇଯିବ ସ୍କାନ୍‌ଲନ୍ । କ୍ରମେ କ୍ରମେ ତାହା 'ଷ୍ଟ୍ରାଟଫୋର୍ଡ'ର ଖୋଲ ଭିତରକୁ ଯିବାଭଳି ସାମାନ୍ୟ ବ୍ୟାପାର ମନେହେବ । ମି: ହେଡ୍‌ଲେ ଲକ୍ଷ୍ୟ କରି ଦେଖ ଏଠି ତଳଟା ଝାମା ପଥରର, ଆଉ ସେହି କଳା କଳା ଢିପ ଜାଗାଗୁଡ଼ିକ ଆଗ୍ନେୟ-ଶିଳାର, ଅର୍ଥାତ ବହୁ ପୁରାକାଳରେ ଆଗ୍ନେୟ ଉତ୍ପାତରୁ ଏଇ ପଥୁରିଆ ଜାଗାଗୁଡ଼ିକର ଜନ୍ମ । ସତରେ ମନେହେଉଛି ମୁଁ

ଏତେଦିନ ଯେଉଁ ମତ ପୋଷଣ କରିଆସିଛି ତାହା ଠିକ୍ । ମୋର ମତ ହେଉଚ ଆଗ୍ନେୟ ଉତ୍ପାତ ଫଳରେ ଯେଉଁ 'ଲାଭା' ବାହାରେ ଏ ଶୈଳଶରାଟି ସେଇଥିରେ ତିଆରି, ଆଉ 'ମାରାକଟ୍ ଡୀପ୍'...ଏ ଶବ୍ଦ ଯୋଡ଼ିକ ସେ ଖୁବ୍ ଓଟାରି ଉଚ୍ଚାରଣ କଲେ–ଆଉ 'ମାରାକଟ୍ ଡୀପ୍' ହେଉଛି ତାହାର ଢାଲୁ ଦିଗଟି । ଆମ ପିଞ୍ଜରାଟିକୁ ଧୀରେ ଧୀରେ ଆଗେଇ ନେଇ 'ଡୀପ୍'ର ଧାରକୁ ନେଇ ଯାଇ ସେ ସ୍ଥାନର ଗଠନଟି କିପରି ଦେଖିଆସିଲେ ମନ୍ଦ ହୁଅନ୍ତା ନାହିଁ । ହୁଏତ ସେଠାରୁ ଦେଖିବା ଗୋଟାଏ ବିରାଟ ଖାତ ଯେଉଁଟି ପ୍ରାୟ ସିଧାସଳଖ ଭାବରେ ସମୁଦ୍ରର ଚରମ ଗଭୀରତା ଆଡ଼କୁ ଚାଲିଯାଇଛି ।'

ତାଙ୍କର ମତଲବଟା ମୋତେ ବିପଜ୍ଜନକ ମନେହେଲା । ଆମର ପିଞ୍ଜରାର ଦଉଡ଼ିଟା ଏପରି ମୋଟ ନୁହେଁ, ପାର୍ଶ୍ୱଗତିରେ ଗଲାବେଳେ ତା' ଉପରେ ଯେଉଁ ଚାପ ପଡ଼ିବ ତା' କେତେଦୂର ଏ ଦଉଡ଼ି ସମ୍ଭାଳିବ କିଏ ଜାଣେ ? କିନ୍ତୁ କୌଣସି ବୈଜ୍ଞାନିକ ନିରୀକ୍ଷା ବେଳେ ମାରାକଟ୍‌ଙ୍କ ମନରେ ନିଜର ବା ଅନ୍ୟର ବିପଦ ବୋଲି କୌଣସି ବସ୍ତୁର ଅସ୍ତିତ୍ୱ ରହେନାହିଁ । ମୁଁ ଓ ବିଲ୍ ଦମ୍ ବନ୍ଦକରି ଦେଖିଲୁ ଆମର ଝୁଲୁଥିବା ଘରଟି ଧୀରେ ଧୀରେ ଦଳ ଝାଡ଼ ଠେଲି ଚାଲିବାକୁ ଆରମ୍ଭ କଲା । ଅର୍ଥାତ୍ ଏଥର ଦଉଡ଼ି ଉପ୍ରରେ ପୂରା ଚାପ ପଡ଼ିଲା । ମାରାକଟ୍ ହାତରେ କମ୍ପାସ୍ ନେଇ କେତେବେଳେ କେଉଁ ଦିଗକୁ ଚଳାଇବାକୁ ହେବ ଚିତ୍କାର କରି ନିର୍ଦ୍ଦେଶ ଦେବାକୁ ଲାଗିଲେ । ମଝିରେ ମଝିରେ କୌଣସି ବାଧାର ସମ୍ମୁଖୀନ ହେଲେ ପିଞ୍ଜରାଟିକୁ କିଞ୍ଚିତ୍ ଉପରକୁ ଉଠାଇବାର ଆଦେଶ ଦେଉଥାନ୍ତି ।

ସେ ଆମକୁ କହିଲେ–ଶୈଳଶିରାଟି ଚଉଡ଼ାରେ ମାଇଲକରୁ ବେଶି ହେବ ନାହିଁ । ଏହିପରି ଗତି କଲେ ଆମେ ଅଳ୍ପ ସମୟରେ ତା'ର ତୀର ଦେଶରେ ପହଞ୍ଚିବା ।

ଚାରିପଟରେ ସେହି ସୁନେଲି ଦଳର ସୁକୋମଳ ଶୋଭା । ଆମେ ଏସବୁ ଦେଖୁ ଦେଖୁ ଚାଲିବାକୁ ଲାଗିଲୁ । ହଠାତ୍ ଡକ୍‌ଟର ଟେଲିଫୋନ୍‌ରେ କହିଲେ–'ବନ୍ଦକର । ଆମେ ଲକ୍ଷ୍ୟସ୍ଥଳରେ ପହଞ୍ଚିଗଲୁ ।'

ଅକସ୍ମାତ୍ ଆମ ସାମନାରେ ଗୋଟିଏ ବିରାଟ ଗହ୍ୱର ମୁଖ ବ୍ୟାଦାନ କରି ହାଜର ହେଲା । କଳା ଜକଜକ୍ ଆଗ୍ନେୟଶିଳାର ଅତଳ ସ୍ପର୍ଶୀ ଖାତ ଚାଲିଯାଇଛି ନିରାଟ ଅଜଣାଆଡ଼େ । ତା' ଦାଢ଼ରେ ଦଳ ବୁଦା ଝୁଲୁଛି–ଠିକ୍ ଯେମିତି ପୃଥିବୀର ମାଟିରେ ଅତଡ଼ା ମୁହଁରେ ବୁଦା ଝୁଲେ । ଖାତଟି ସାମନା ପଟକୁ କ୍ରମଶଃ ଢାଲୁ, କିନ୍ତୁ ତା ମୁହଁଟା କେତେ ଚଉଡ଼ା ତା' ବୁଝିବାର ଉପାୟ ନାହିଁ । ଆମ ଆଲୁଅ ସାମନାର ଘନ ଅନ୍ଧକାର ଭେଦ କରିପାରୁ ନଥିଲା । ଲୁକସ୍ ସିଗନାଲିଂ ଲ୍ୟାମ୍ପର ମୁହଁଟା ବୁଲାଇ ତଳ ଆଡ଼କୁ ଆଲୁଅ ପକାଗଲା । ସମାନ୍ତରାଳ ଆଲୋକ-ରଶ୍ମିର ସୁନେଲି ରେଖା ତଳକୁ ଓହ୍ଲାଇଗଲା–

ତଳକୁ–ଆହୁରି ତଳକୁ–ଗହ୍ୱରର ଅନ୍ତଃହୀନ ଅନ୍ଧକାର ତାକୁ ଶୋଷି ନେଲା–ଗହ୍ୱରର ଶେଷ କେଉଁଠି ଦେଖାଗଲା ନାହିଁ ।

ମାରାକଟ୍‌ଙ୍କ ଶୀର୍ଣ୍ଣ ମୁହଁରେ ମାଲିକପଣିଆର ଆନନ୍ଦଭାବ । କହିଲେ, 'ବାସ୍ତବିକ ଅତି ଚମତ୍କାର । ଅବଶ୍ୟ ଏହାଠାରୁ ବଳି ଗଭୀର 'ଡୀପ୍' ଅଛି । କିନ୍ତୁ କେବଳ ତଥ ଦୃଷ୍ଟିରୁ ବୋଧହୁଏ ମାରାକଟ୍ ଡୀପ୍ ଅଦ୍ୱିତୀୟ । ତା'ଛଡ଼ା ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ଯେ...'କଥା ମଝିରେ ସେ ହଠାତ୍ ଥମିଗଲେ । ଅନାଇ ଦେଖିଲି ଗଭୀର ଆଗ୍ରହ ଓ ବିସ୍ମୟ ତାଙ୍କ ମୁହଁରେ ଘନୀଭୂତ ହୋଇଯାଇଛି । ସ୍କାନ୍‌ଲନ୍ ଓ ମୁଁ ତାଙ୍କ କାନ୍ଧ ଉପର ଦେଇ ଅନାଇ ଦେଖିଲୁ–ଯାହା ଦେଖିଲୁ ସେଥିରେ ଆମେ ପଥର ପାଲଟିଗଲୁ ।

ଆମ ଆଲୁଅର ପଥ ଦେଇ ଖାତର ମେଲା ପାଟି ଭିତରୁ ଉଠୁଛି ଗୋଟିଏ ପ୍ରକାଣ୍ଡ ଜୀବ । ଅନେକ ତଳେ ଯେଉଁଠି ଆମ ଆଲୁଅ ମିଶିଛି ଅନ୍ଧାରରେ ସେଠି ତା'ର କାଳିଆ ବିରାଟ ଦେହଟା ପହଣ୍ଡି କରିବା ଭଳି ଅଭୁତ ଭଙ୍ଗୀରେ ଉଠି ଆସୁଥିବାର ଦେଖାଯାଉଥିଲା । ଟିକିଏ ନିକଟକୁ ଆସିବାରୁ ଆମ ଆଲୁଅ ଯେତେବେଳେ ତା' ଉପରେ ପୂରା ପଡ଼ିଲା ସେତେବେଳେ ତା'ର ଭୟଙ୍କର ରୂପ ଆମେ ସ୍ପଷ୍ଟ ଦେଖିବାକୁ ପାଇଲୁ । ସେ ଜନ୍ତୁ ବିଜ୍ଞାନର ଅଜଣା, କିନ୍ତୁ କୌଣସି କୌଣସି ଜଣା ଜୀବ ସହିତ ତା'ର ମେଳ ଅଛି । ତା'ର ଗଠନଟା ଅବଶ୍ୟ ଗୋଟିଏ ବିରାଟ କଙ୍କଡ଼ା ଭଳି–କିନ୍ତୁ ଟିକିଏ ବେଶି ଲମ୍ୱା, ଏବଂ ଗୋଟାଏ ଅତିକାୟ ଚିଙ୍ଗୁଡ଼ି ଭଳି ମଧ–କିନ୍ତୁ ଟିକିଏ ବେଶି ମୋଟା–ମୋଟ ଉପରେ ଢାଞ୍ଚାଟା ଗୋଟାଏ ବାଗ୍‌ଦା ଚିଙ୍ଗୁଡ଼ି ଭଳି । ଦୁଇ ପଟେ ଦୁଇଟା ଦାନବୀୟ ଦାଢ଼ା (ବୁଢ଼ା ଗୋଡ଼), ଆଉ ମୁହଁ ସାମନାରେ ପନ୍ଦର ଯୋଳ ଫୁଟ ଲମ୍ୱର ଯୋଡ଼ାଏ ଶୁଣ୍ଢ । ତା' ପଛରେ ଦୁଇଟା କାଳିଆ କାଳିଆ ବଦ୍‌ମିଜାଜିଆ ବୋକାଳିଆ ଆଖି । ଦେହର ଫିକା ହଳଦିଆ ରଙ୍ଗର ଖୋଳ ସହିତ ସେ ଜୀବଟା ଚଉଡ଼ାରେ ଦଶଫୁଟ ହେବ, ଆଉ ଶୁଣ୍ଢ ବାଦେ ଲମ୍ୱାରେ ତିରିଶ ଫୁଟରୁ କମ୍ ନୁହେଁ ।

ମାରାକଟ୍ ତାଙ୍କର ନୋଟ୍ ବହିରେ ଉର୍ଦ୍ଧ୍ୱଶ୍ୱାସରେ ଲେଖୁ ଲେଖୁ ପାଟିକରି କହିବାକୁ ଲାଗିଲେ, 'ଚମତ୍କାର !'

ବିଲ୍ ଚିତ୍କାର କଲା–'ଚମତ୍କାର ସତ, କିନ୍ତୁ ଆପତତଃ ସେଟା ଯେ ଆମ ଆଡ଼କୁ ଆସୁଚି ମନେହୁଏ । ସାର୍, ଆମ ଆଲୁଅଗୁଡ଼ିକ ଲିଭାଇଦେଲେ କେମିତି ହୁଅନ୍ତା ?'

ବିଜ୍ଞାନୀ ଆଗ୍ରହାତିଶଯ୍ୟରେ ପ୍ରାୟ ରୁଦ୍ଧଶ୍ୱାସରେ କହିଲେ–ମିନିଟଟେ–ଆଉ ସେ ଜୀବ ସମ୍ବନ୍ଧରେ ଆଉ କିଛି ଟିପିନେଇ ସୁଇଚ୍ ଅଫ୍ କରିଦେଲେ । ଆମେ ପୁଣି ସେଇ ଘନ ଅନ୍ଧାରରେ ବୁଡ଼ିଗଲୁ । କେବଳ ବାହାରେ ସେଇ ଆଲୋକ ବିନ୍ଦୁଗୁଡ଼ିକ କ୍ଷିପ୍ର ଗତିରେ ଯାତାୟାତ କରୁଥାନ୍ତି–ଅମାବାସ୍ୟାର ଆକାଶରେ ଉଲକାପାତ ଭଳି ।

ବିଲ୍ କପାଳରୁ ଝାଳ ପୋଛୁ ପୋଛୁ କହିଲା, 'ଅଲବତ୍ ଜାନୁଆରଟା ଦୁନିଆରେ ସବୁଠୁଁ ବଳି ବଦ୍‌ମାସ୍ !'

ମାରାକଟ୍ କହିଲେ, 'ଏଇଟା ଦେଖିବାକୁ ଅବଶ୍ୟ ଭୟଙ୍କର, ଆଉ ସେଇ ଦାନବୀୟ ଦାଢ଼ାଦୁଇଟା ଦାଉରେ ପଡ଼ିଲେ ସେଟା ବି ହୁଏତ ଭୟଙ୍କର ହେବ । କିନ୍ତୁ ଆମର ଏଇ ଇସ୍ପାତ ଘର ଭିତରୁ ତାକୁ ନିରାପଦରେ ପର୍ଯ୍ୟବେକ୍ଷଣ କରିହେବ ।'

ତାଙ୍କ କଥା ଶେଷ ହେଉନହେଉଣୁ ଘର କାନ୍ଥର ବାହାରପଟୁ କୋଦାଳ ଆଘାତ ଭଳି ଶବ୍ଦ ଶୁଣାଗଲା । ତା'ପରେ କିଛି କ୍ଷଣ ଧରି ଉହା ଘଷିବା ଭଳି ଶବ୍ଦ ଓ ଶେଷରେ ପୁଣି ଥରେ କୋଦାଳ ଆଘାତର ଆବାଜ ।

ବିଲ୍ ସ୍କ୍ୟାନ୍‌ଲନ୍ ପାଟିକରି କହିଲା, 'ଧରନ୍ତୁ ସେ ଭିତରକୁ ଆସିବାକୁ ଚାହେଁ । ମୋ ରାଣ, ଘରକାନ୍ଥରେ 'ପ୍ରବେଶ ନିଷେଧ' ଲେଖିଦେବା ଉଚିତ ।' କିନ୍ତୁ ପରିହାସ କଲେ କ'ଣ ହେବ, ତାଙ୍କ ସ୍ୱର ଥରିଯାଉଥିଲା । ଆଉ ନିଜ ବିଷୟଟି ବି କହେ । ମୋ ଆଣ୍ଠୁକୁ ଆଣ୍ଠୁ ସେତେବେଳେ ଠକ୍ ଠକ୍ ବାଜିଯାଉଥିଲା । ସେଇ ରାକ୍ଷସ ଭଳି ଜୀବଟା ନିଃଶବ୍ଦରେ ଆମର ଗୋଲ ପିଞ୍ଜରାଟା ପରୀକ୍ଷା କରି ଦେଖିବାକୁ ଲାଗିଲା । ତା'ର ବିରାଟ ଦେହ ଦ୍ୱାରା ଥରେ ଏ ଝରକା, ଥରେ ସେ ଝରକା ଯେମିତି ଆହୁରି ଗଭୀର ଅନ୍ଧକାରରେ ଢାଙ୍କିହୋଇଯାଉଥିଲା । ଜାନୁଆରଟା ବୋଧହୁଏ ଭାବୁଥିଲା–ଗୋଲକଟାକୁ ଭାଙ୍ଗପାରିଲେ ଭିତରେ ଖାଇବା ଜିନିଷ ଅବଶ୍ୟ ମିଳିପାରିବ ।

ମାରାକଟ୍ କହିଲେ, 'ଜନ୍ତୁଟା ଆମର କିଛି କରିପାରିବନାହିଁ'–କିନ୍ତୁ ତାଙ୍କ ସ୍ୱରରେ ଆଉ ସେମିତି ଭରସାର ଦୃଢ଼ତା ନଥିଲା–'ତେବେ ସେଟାକୁ ତଡ଼ିଦେବା ଭଲ ।' ଏହାକହି ସେ ଟେଲିଫୋନରେ କ୍ୟାପ୍ଟେନ୍‌ଙ୍କୁ ଡାକି କହିଲେ, 'ଆମକୁ କୋଡ଼ିଏ ତିରିଶ ଫୁଟ ଉପରକୁ ଉଠାନ୍ତୁ ।'

କେତେକ ସେକେଣ୍ଡ ପରେ ଆମେ ସେ ଲାଭାମୟ ଭୂମି ଛାଡ଼ି ଉପରକୁ ଉଠି ଆସ୍ତେ ଆସ୍ତେ ଝୁଲିବାକୁ ଲାଗିଲୁ । କିନ୍ତୁ ସେଇ ଭୟଙ୍କର ଜୀବଟା ଆମକୁ ଛାଡ଼ିଲା ନାହିଁ । ଟିକିଏ ପରେ ପୁଣି ପିଞ୍ଜରାର ଗୋଲ ଦେହରେ ତା'ର ବୁଢ଼ା ଗୋଡ଼ର ଘସ୍ ଘସ୍ ଶବ୍ଦ ଓ ଗୋଡ଼ ନଖର ଠକ୍ ଠକ୍ ଶବ୍ଦ ଶୁଣାଗଲା । ସେଇ ଅନ୍ଧକାର ଭିତରେ ଚୁପଚାପ୍ ବସି ଆମେ ଅନୁଭବ କରିବାକୁ ଲାଗିଲୁ ମରଣ ସତକୁସତ ଦୁଆର ମୁହଁରେ ଉପସ୍ଥିତ ହେଲେ କେମିତି ଲାଗେ । ଯଦି ଜନ୍ତୁଟାର ବିରାଟ ନଖର ଗୋଟାଏ ପାହାର ଆମ ଝରକାର କାଚ ଉପରେ ପଡ଼େ ତା'ହେଲେ ଆମର କି ଦଶା ହେବ, ସମସ୍ତଙ୍କ ମନରେ ଏଇ ଥିଲା ପ୍ରଶ୍ନ ।

ହଠାତ୍ ଠକ୍ ଠକ୍ ଶବ୍ଦଟା ଚାଲିଗଲା ପିଞ୍ଜରାର ଉପରପଟକୁ–ଯେଉଁଠି ଆମର ପବନ ଆସିବା ନଳି, ଟେଲିଫୋନ୍, ଲୁହା ଦଉଡ଼ି, ଆମର ସବୁ କିଛି ଅଛି । ପିଞ୍ଜରାଟି ଏବେ ପେଣ୍ଡୁଲମ୍ ଭଳି ଦୋହଲିବାକୁ ଲାଗିଲା ।

ମୁଁ ପାଟିକରିଉଠିଲି, 'ସର୍ବନାଶ ! ଦଉଡ଼ିଟାକୁ ଧରିଚି–ନିଶ୍ଚୟ ଛିଣ୍ଡାଇ ଦବ ! ସାର୍, ମୁଁ କହୁଛି ଏଥର ଉଠିଗଲେ କେମିତି ହୁଅନ୍ତା ? ଆମେ ଯାହା ଦେଖିବାକୁ ଆସିଥିଲେ ତାହା ତ ଦେଖିଲେ–ଫୋନ୍ କରନ୍ତୁ ଆମକୁ ଟାଣି ଉଠାଇବାକୁ ।'

ମାରାକଟ୍ ଟିକିଏ ଅପ୍ରସନ୍ନ ଭାବରେ କହିଲେ, 'କିନ୍ତୁ ଆମ କାମ ତ ଅଧା ବି ହୋଇନାହିଁ । ଆମେ କେବଳ ଡୀପ୍‌ର (ଖାତ) ମୁହଁ ପାଖଟା ଅନୁସନ୍ଧାନ କରିଛେ ମାତ୍ର, ଅନ୍ତତଃ ଏହା କେତେ ଚଉଡ଼ା ସେଇଟା ତ ଦେଖାଯାଉ ! ଏହାର ଆରପାଖରେ ପହଞ୍ଚିବା ପରେ ମୁଁ ଫେରିବାକୁ ରାଜିଅଛି ।' ତା'ପରେ ଟେଲିଫୋନ୍‌ରେ କହିଲେ, 'ସବୁ ଠିକ୍‌ଅଛି କ୍ୟାପ୍‌ଟେନ୍, ଦୁଇ ନଟ୍ ଗତିରେ ଚାଲନ୍ତୁ ଯେତେବେଳ ପର୍ଯ୍ୟନ୍ତ ମୁଁ ଅଟକିବାକୁ ନ କୁହେ ।'

ଆମେ ଧୀରେ ଧୀରେ ଡୀପ୍‌ର ପାଖ ଧାରରୁ ମଝିକୁ ଆଗେଇଲୁ । ଆଲୁଅ ଲିଭାଇ ଯେତେବେଳେ ଜନ୍ତୁଟାର ଦାଉରୁ ନିସ୍ତାର ନ ମିଳିଲା, ସେତେବେଳେ ବୃଥାଟାରେ ଅନ୍ଧାରରେ ପଡ଼ି ନ ରହି ଆଲୁଅ ଜାଳିଦିଆଗଲା । ଜନ୍ତୁଟା ଗୋଟାଏ ଝରକା ଏକଦମ୍ ଢାଙ୍କି ରହିଥିଲା । ତା' ଭିତର ଦେଇ ଜନ୍ତୁଟାର ପେଟପଟଟା ବୋଧହୁଏ ଦିଶୁଥିଲା । ମୁଣ୍ଡଟା ଓ ପ୍ରକାଣ୍ଡ ବୁଢ଼ା ଗୋଡ଼ ଦି'ଟା ଉପରପଟରେ କେଉଁ କାମରେ ବ୍ୟସ୍ତଥିଲା ଭଗବାନ ଜାଣନ୍ତି । ସେତେବେଳେ ଆମେ ପିଟା ଘଣ୍ଟା ଭଳି ଦୋହଲୁଥିଲୁ । ମଣିଷ କେବେ ଏପରି ଅବସ୍ଥାରେ ପଡ଼ିନାହିଁ–ତଳେ ପାଞ୍ଚମାଇଲ ପାଣି ଆଉ ଉପରେ ଏକ ଦାନବୀୟ ଜନ୍ତୁ । ଦୋଳନଟା କ୍ରମେ ବଢ଼ିବାକୁ ଲାଗିଲା । ଦଉଡ଼ିର ପ୍ରବଳ ଝିଙ୍କା ଓଟରା କ୍ୟାପଟେନ୍ ଜାଣିପାରିଲେ । ତାଙ୍କର ଉତ୍ତେଜିତ କଣ୍ଠସ୍ୱର ଟେଲିଫୋନ୍ ତା'ର ଦେଇ ଶୁଣାଗଲା । ମାରାକଟ୍ ହଠାତ୍ ଛିଡ଼ାହୋଇଗଲେ । ଦାରୁଣ ହତାଶାରେ ଦୁଇହାତ ଟେକିଦେଲେ ଶୂନ୍ୟକୁ । ସେଇ ମୁହୂର୍ତ୍ତରେ ଆମେ ଦଉଡ଼ି କଟିବାର କମ୍ପନ ଅନୁଭବ କଲୁ । ତା'ପରେ ଆମେ ଅତଳସ୍ପର୍ଶୀ ଗହ୍ୱର ମଧକୁ ଖସିବାକୁ ଲାଗିଲୁ ।

ସେଇ ଭୟଙ୍କର ସମୟ କଥା ଯେତେବେଳେ ଭାବେ ମନେପଡ଼େ ଶୁଣିବାକୁ ପାଇଥିଲି ମାରାକଟ୍‌ଙ୍କ କର୍ଣ୍ଣଭେଦୀ ଚିତ୍କାର । ଟେଲିଫୋନ୍‌କୁ ମୁଠାଇ ଧରି ସେ ପାଟିକରୁଥିଲେ : 'ଦଉଡ଼ି କଟିଗଲା ! ଆଉ ଆଶା ନାହିଁ ! ଆମେ ମଲୁ !' ତା'ପରେ– 'ବିଦାୟ କ୍ୟାପ୍‌ଟେନ୍, ସମସ୍ତେ ବିଦାୟ ଦିଅନ୍ତୁ ।'

ପୃଥିବୀର ମଣିଷ ଉଦ୍ଦେଶ୍ୟରେ ତାହାହିଁ ଆମର ଶେଷ କଥା ।

ସେହି ଭୟଙ୍କର ଜନ୍ତୁଟାର ଗୋଡ଼ ଭିତର ଦେଇ ଆମର ଗୋଲ ପିଞ୍ଜରାଟି ଆସ୍ତେ ଆସ୍ତେ ଖସି ବାହାରିଆସିଲା । ଗୋଟାଏ ଦୀର୍ଘ ଘସ୍ ଘସ୍ ଶବ୍ଦ ଶୁଣିବାକୁ ପାଇଲି । ଭାବୁଚନ୍ତି ତା'ପରେ ଆମେ ଖୁବ୍ କ୍ଷିପ୍ର ଗତିରେ ତଳକୁ ପଡ଼ିବାକୁ ଲାଗିଲୁ–ନା । ଆମ ପିଞ୍ଜରାଟି ଫମ୍ପା ଥିବା ହେତୁ ତାହା ଆମକୁ ଧରି ଧୀରେ ଧୀରେ ବୁଲି ବୁଲି ଅତଳ ଗଭୀରତା ଭିତରକୁ ଖସିବାକୁ ଲାଗିଲା ।

ଟେଲିଫୋନ୍‌ର ତାର ଶେଷ ହେବାକୁ ବୋଧହୁଏ ପାଞ୍ଚମିନିଟ ଯାଏ ଲାଗିଲା–କିନ୍ତୁ ଆମର ମନେହେଲା ଘଣ୍ଟାଏ ହବ । ତାରଟି ସୂତା ଭଳି ପଟ୍ କରି ଛିଣ୍ଡିଗଲା । ପବନ ନଳିଗୁଡ଼ିକ ପ୍ରାୟ ଠିକ୍ ସେଇ ସମୟରେ କଟିଗଲା ଏବଂ ତା' ଭିତର ଦେଇ ପିଚକାରି ଭଳି ପାଣିର ତୋଡ଼ ପଡ଼ିଲା ଆମ ପିଞ୍ଜରା ଭିତରକୁ । ବିଲ୍ ଚଟ୍‌ପଟ୍ ନଳିଗୁଡ଼ିକର ମୁହଁ ଦଉଡ଼ି ଦେଇ ବାନ୍ଧିପକାଇବାରୁ ପାଣି ପଶିବା ବନ୍ଦ ହେଲା । ସାଙ୍ଗେ ସାଙ୍ଗେ ଡକ୍‌ଟର ସଞ୍ଚିତ ପବନର ଟ୍ୟୁବ୍ ଖୋଲିଦେଲେ । ହିସ୍ ହିସ୍ ହୋଇ ପବନ ବାହାରିବାକୁ ଲାଗିଲା । ତାର କଟିଯାଇଥିବାରୁ ଆଲୁଅ ଲିଭିଯାଇଥିଲା । ସେ ଅନ୍ଧାରରେ ବି ଡକ୍‌ଟର ଡ୍ରାଇ ସେଲ୍‌ଗୁଡ଼ିକୁ ସଂଯୁକ୍ତ କରିପକାଇଲେ, ତାଦ୍ୱାରା ଛାତର କେତେଗୁଡ଼ିଏ ଆଲୁଅ ଜଳିଲା ।

ଟିକିଏ ଶୁଖିଲା ହସ ହସି କହିଲେ, 'ଏଥର ଆମର ଏକ ସପ୍ତାହ ଚଳିବା କଥା– ଅନ୍ତତଃ ଆଲୁଅରେ ଥାଇ ମରିବା ।' ତା'ପରେ ବିଷଣ୍ଣ ଭାବରେ ଟିକିଏ ମୁଣ୍ଡହଲାଇଲେ । ତାଙ୍କର କଠିନ ମୁହଁରେ ଥରେମାତ୍ର ସହୃଦୟ ହସ ଫୁଟି ଦିଶିଲା । କହିଲେ, 'ମୋର ଏଥିରେ କିଛି ଯାଏଆସେନା । ମୋର ବୟସ ହୋଇଚି । ପୃଥିବୀରେ ମୋର କାମ ବି ଶେଷ ହୋଇଚି । କିନ୍ତୁ ତୁମ୍ଭମାନଙ୍କ ବୟସ ଅଳ୍ପ, ତୁମ ଦି' ଜଣକୁ ସଙ୍ଗରେ ଆଣିଥିବା ଯୋଗୁ ହିଁ ମୋର ଦୁଃଖ । ମୋର କର୍ତ୍ତବ୍ୟ ଥିଲା ଏକା ଏ ଦାୟିତ୍ୱ ନେବା ।'

ମୁଁ କେବଳ ତାଙ୍କ ହାତଟା ଜୋର୍‌ରେ ଧରିନେଲି । କହିବାଭଳି କିଛି କଥା ମୁହଁକୁ ଜୁଟିଲା ନାହିଁ । ଏପରିକି ବିଲ୍ ସ୍କାନଲନ୍ ମଧ୍ୟ ନୀରବ । ଆମେ ଖସିବାକୁ ଲାଗିଲୁ କ୍ରମାଗତ । ଝରକା ପାଖରେ ମାଛର କାଳିଆ ଛାଇଗୁଡ଼ିକ କ୍ରମାଗତ ଉପରକୁ ଉଠିଯାଉଥାନ୍ତି । ପିଞ୍ଜରାଟି ସେ ପର୍ଯ୍ୟନ୍ତ ଦୋହଲୁଥାଏ । ତାହା କଡ଼ପଟିଆ ହୋଇ ଅଥବା ମୁଣ୍ଡ ତଳକୁ କରି ପଡ଼ିପାରିଥାନ୍ତା–କିନ୍ତୁ ତା ଭିତରର ଓଜନ ସମାନ ଭାବରେ ଖେଳେଇ ହୋଇଥିବାରୁ ଚଟାଣଟା ସମାନ ରହିଲା । ଗଭୀରତା-ମାପକୁ ଅନାଇ ଦେଖିଲି ଆମେ ଇତିମଧ୍ୟରେ ଏକ ମାଇଲ ଗଭୀରକୁ ଖସିଆସିଛୁ ।

ମାରାକଟ୍ ଖୁବ୍ ଖୁସି ମୁହଁରେ କହିଲେ, 'ଦେଖୁଚ, ମୁଁ ଯାହା କହୁଥିଲି ତାହାହିଁ ଠିକ୍ । ସାଗରତାତ୍ତ୍ୱିକ ସମିତି ଅଧିବେଶନର ବିବରଣୀରେ ଗଭୀରତା ଓ ଚାପ ସମ୍ବନ୍ଧରେ ମୋର ମତାମତ ହୁଏତ ପଢ଼ିଥିବ । ଜର୍ମାନ୍ ବିଜ୍ଞାନୀ 'ବୁଲୋ' ମୋ ମତର ପ୍ରତିବାଦ କରିଥିଲେ । ପୃଥିବୀକୁ ଯଦି କେବଳ ଗୋଟିଏ ମାତ୍ର କଥା ଏ ସମୟରେ ପଠାଇ ପାରନ୍ତି ତା'ହେଲେ ତାଙ୍କ ମତ ଯେ ଭୁଲ ତା ପ୍ରମାଣିତ ହୁଅନ୍ତା ।'

ବିଲ୍ କହିଲା, 'ମୋ ରାଣ, ମୁଁ ଯଦି ଏହିକ୍ଷଣି ଦୁନିଆକୁ ଗୋଟାଏ କଥା ପଠାଇ ପାରନ୍ତି ! ଫିଲାଡ଼େଲ୍‌ଫିଆରେ ଅଛି ଗୋଟିଏ ଜାହାଜୀର ଝିଅ, ଯାହାର ଆଖିରୁ ପାଣି ଗଡ଼ପଡ଼ନ୍ତା ବିଲ୍ ସ୍କାନ୍‌ଲନ୍ ଘଟ ଛାଡ଼ିଛି ଶୁଣି ।'

ମୁଁ ତାହାର ହାତରେ ହାତ ରଖି କହିଲ, 'ତୁମର ଆସିବା ଉଚିତ ହୋଇନାହିଁ ବିଲ୍ ।'

ସେ ଉତ୍ତର ଦେଲା, 'ନ ଆସି ପଳାଇ ଯାଇଥିଲେ ତା' ଗୋଟାଏ ଶସ୍ତା ତାମସା ହୁଅନ୍ତା । ନା, ଏ ମୋର କାମ, ମୁଁ ମୋର କାମ ଛାଡ଼ି ପଳେଇଯାଇନାହିଁ । ଏଇଥରେ ମୋର ଖୁସି ।'

'ଠିକ୍ କଥା ।' ଡକ୍ଟରଙ୍କୁ ପଚାରିଲି, 'ଆଉ କେତେ କ୍ଷଣ ?'

ସେ କାନ୍ଧ ହଲେଇ କହିଲେ, 'ସମୁଦ୍ରର ଏକଦମ୍ ଅସଲ ତଳଟା ଦେଖିବା ଭଳି ସମୟ ଯାହେଉ ମିଳିବ । ପ୍ରାୟ ଦିନକର ବ୍ୟବହାର ଭଳି ପବନ ଆମ ଟ୍ୟୁବ୍‌ରେ ଅଛି । ଅସୁବିଧା ହେଉଛି ଆମ ନିଃଶ୍ୱାସରେ ବାହାରୁଥିବା ଅଙ୍ଗାରକାମ୍ଳକୁ ନେଇ । ତା'ରି ଦ୍ୱାରା କ୍ରମେ ଆମ ଦମ୍ ଅଟକି ଆସିବ । ଏହି ଗ୍ୟାସ୍‌ଟାର ଯଦି କିଛି ବନ୍ଦୋବସ୍ତ–'

'ତାହା ତ ଅସମ୍ଭବ ଦେଖାଯାଉଛି ।'

'ଗୋଟିଏ ଟ୍ୟୁବ୍ ବିଶୁଦ୍ଧ ଅମ୍ଳଜାନ ଅଛି, ବିଶେଷ ବିପଦରେ ବ୍ୟବହାର ପାଇଁ ରଖିଥିଲି । ମଝିରେ ମଝିରେ ସେଥିରୁ ଟିକିଏ ଟିକିଏ ବାହାରକରି ଆମେ ବଞ୍ଚି ରହିବା । ଦେଖ, ବର୍ତ୍ତମାନ ଆମେ ଦୁଇ ମାଇଲରୁ ବେଶି ତଳେ ।'

ମୁଁ କହିଲି, 'ବଞ୍ଚିରହିବାର ଚେଷ୍ଟାକରି ଲାଭ କ'ଣ ? ଯେତେ ଶୀଘ୍ର ସବୁ ଶେଷ ହୋଇଯାଏ ସେତେ ମଙ୍ଗଳ ।'

ପିଞ୍ଜରାଟା ତଳକୁ ଖସି ଚାଲିଥାଏ । ମାରାକଟ୍ କହିଲେ, 'ତିନିମାଇଲ ହେଲା । ଅମ୍ଳଜାନଟା ଥରେ ଖୋଲିଦିଏ ମି: ହେଡ୍‌ଲେ, ନିଃଶ୍ୱାସ ନେବାକୁ କଷ୍ଟ ଲାଗୁଛି ।'

ଯନ୍ତ୍ରର କଣ୍ଟା କ୍ରମେ ଚତୁର୍ଥ ମାଇଲରେ ପହଞ୍ଚିଲା । ଥରେ କେଉଁଥିରେ ଧକ୍‌କା ବାଜି ପିଞ୍ଜରାଟା ଗୋଟିଏ ପଟକୁ ଏମିତି ନଇଁଗଲା ଯେ ମୋର ମନେହେଲା ସେଟା ଆଉ ସିଧା ହୋଇପାରିବ ନାହିଁ । କିନ୍ତୁ ସେଟା ଆସ୍ତେ ଆସ୍ତେ ସିଧା ହେଲା–ଟିକିଏ ବେଶି ଦୋହଲିବାକୁ ଲାଗିଲା କେବଳ । ଘନ ସବୁଜ ଅନ୍ତହୀନ ଜଳରାଶି ଭିତର ଦେଇ ସେତେବେଳେ ବି ଆମେ ଖସୁଚୁ ତଳକୁ । ଗଭୀରତା ମାପକ ମିଟରକୁ ଚାହିଁ ମାରାକଟ୍ କହିଲେ, 'ଆମେ ପ୍ରାୟ ଯାତ୍ରା ଶେଷରେ ପହଞ୍ଚିଗଲେ । ଆଉ କେଇ ମିନିଟ୍ ମଧ୍ୟରେ ଆମର ଭାଗ୍ୟ ନିୟନ୍ତ୍ରିତ ହୋଇଯିବ । ହୁଏତ ଧକ୍‌କା ଫଳରେ ଆମେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯିବୁ, କିମ୍ବା ହୁଏତ–'

ସେଇ ମୁହୂର୍ତ୍ତରେ ଆମେ ତଳେ ଲାଗିଲୁ । ମା' ତା'ର ପୁଅକୁ ନରମ ବିଛଣାରେ ଯେମିତି ଶୁଆଇ ଦିଏ, ମନେହେଲା ତାଠୁ ନରମ ଭାବରେ ଆଟଲାଣ୍ଟିକ୍ ମହାସାଗର ତା'ର କୋଳ ଦେଖାଇ ଦେଲା ଆମ ପାଇଁ । ଯେଉଁ ନରମ ସିନ୍ଧୁମଳର ଗଦି ଉପରେ ଆମେ ଓହ୍ଲାଇଲୁ ସେଥିରେ ଆମର ପତନର ଧକ୍‌କା ଏପରି ସମ୍ଭାଳି ହୋଇଗଲା ଯେ ଆମେ ଟିକିଏ ସୁଦ୍ଧା ହଲିଲୁ

ନାହିଁ–ଏପରିକି ଆମେ ଯେ ଯେଉଁଠି ବସିଥିଲୁ ସେଇଠି ରହିଲୁ । ପିଞ୍ଜରାଟି ଗୋଟିଏ ସ୍ତୂପ ଭଳି ଏକ ଢିପ ଜାଗା ଉପରେ ଓହ୍ଲାଇ ଥିଲା । ପିଞ୍ଜରାର ଅଧେ ସେଇ ଢିପଜାଗା ବାହାରେ ବାହାରିଥିବାରୁ ପିଞ୍ଜରାଟି ଅଟକି ଯାଇ ମଧ୍ୟ ଦୋହଲିବାକୁ ଲାଗିଲା ଓ କିଛି ସମୟ ପରେ ସ୍ଥିର ହେଲା । ଡକ୍‌ଟର ମାରାକଟ୍ ତାଙ୍କର ଜଳାକବାଟି ବାଟ ଦେଇ ବାହାରକୁ ଅନାଇ ବିଜ୍ଞାନୀ ଦୃଷ୍ଟିରେ ଚାରିଆଡ଼େ ନିରୀକ୍ଷଣ କରିବାକୁ ଲାଗିଲେ । ସେ ହଠାତ୍ ଅତି ଆଶ୍ଚର୍ଯ୍ୟହୋଇ ପାଟି କରି ଉଠିଲେ 'ଆରେ' ଏବଂ ଆଲୁଅ ଲିଭାଇ ଦେଲେ । ଆମେ ଆଶ୍ଚର୍ଯ୍ୟ ହୋଇ ଦେଖିଲୁ ଯେ ଆଲୁଅ ଲିଭାଇବା ସତ୍ତ୍ୱେ ବି ଚାରିଆଡ଼େ କେତେକ ଶହ ଗଜ ପର୍ଯ୍ୟନ୍ତ ସ୍ପଷ୍ଟ ଦେଖାଯାଉଛି । ଶୀତକାଳ ବଡ଼ିସକାଳର କୁହୁଡ଼ି ଆବୃତ ଆଲୁଅ ଭଳି ମ୍ଳାନ ଆଲୋକ ଜଳାକବାଟି ବାଟେ ଭିତରେ ଆସି ପଡ଼ିଚି । ଘଟଣାଟା ଅସମ୍ଭବ, ଅଚିନ୍ତନୀୟ–ତଥାପି ନିଜ ଆଖିକୁ ବିଶ୍ୱାସ କରିବାକୁ ହେଲା । ସମୁଦ୍ରର ତଳଦେଶ ନିଜସ୍ୱ ଆଲୋକରେ ଉଜ୍ଜ୍ୱଳ ।

ପ୍ରାୟ ଦୁଇମିନିଟ ପାଇଁ ତିନିହେଁ ନିର୍ବାକ ବିସ୍ମୟରେ ଅନାଇ ରହିବା ପରେ ମାରାକଟ୍ ଉତ୍ସାହରେ କହିଲେ, 'ନିଶ୍ଚୟ ତ ! ମୋର ତ ଏକଥା ଆଗରୁ ଭାବିବା ଉଚିତ ଥିଲା ! ଏଇ ସିନ୍ଧୁମଳ ପଦାର୍ଥଟି କ'ଣ ? କୋଟି କୋଟି ପ୍ରାଣୀଙ୍କର ବିନାଶ ହେତୁ ତ ଏହାର ସୃଷ୍ଟି ! ପ୍ରାଣୀ ଦେହର ପଚନ ସହିତ ଅନୁପ୍ରଭା ବା ଚିର୍‌ଗଣୀ ଆଲୁଅ ନାମକ ବ୍ୟାପାରଟି ଜଡ଼ିତ–ତାହା କିଏ ନଜାଣେ ? ଆହା, ଏପରି ଗୋଟିଏ ତଥ୍ୟର ଏପରି ଚାକ୍ଷୁଷ ପ୍ରମାଣ ପାଇ ପୃଥିବୀକୁ ଯାହା ସେ ଜ୍ଞାନରୁ କିଛି ଦେଇ ପାରିଲୁ ନାହିଁ–ବାସ୍ତବିକ ଭାଗ୍ୟର ଏହା ବଡ଼ ନିର୍ମମ ବିଚାର ।'

ମୁଁ କହିଲି, 'କିନ୍ତୁ ଆମେ ତ ବେଳେ ବେଳେ ଅଧଟନ୍ ଅନ୍ଦାଜ ଜାବଜେଲି ସମୁଦ୍ରତଳୁ ଛାଣି ଉଠାଇଛୁ, ସେଥିରେ ତ ଏପରି ଆଲୁଅ ଦେଖିବାକୁ ପାଇନୁ ?'

ଡକ୍‌ଟର କହିଲେ, 'ସମୁଦ୍ରତଳୁ ଜଳ ଉପର ପର୍ଯ୍ୟନ୍ତ କିଛି କମ୍ ଦୂର ନୁହେଁ । ଏତେ ଦୂର ଯାଉଁ ଯାଉଁ ନିଶ୍ଚୟ ଜେଲି ତାହାର ଅନୁପ୍ରଭା ହରାଏ । ଆଉ ଏହି ସୁବିଶାଳ ପଚନ-ଭୂମି ତୁଳନାରେ ଅଧଟନ୍ ଅତି ସାମାନ୍ୟ ।'

ମାରାକଟ୍‌ଙ୍କ କାର୍ଯ୍ୟକଳାପ ଦେଖି ସତରେ ଆଶ୍ଚର୍ଯ୍ୟ ହେଉଥିଲି । ପିଞ୍ଜରା ଭିତରର ଦୂଷିତ ପବନ ଭିତରେ ଆସନ୍ନ ମୃତ୍ୟୁର ଛାୟା ତଳେ ବସି ସେ ପର୍ଯ୍ୟନ୍ତ ବି ସେ ବିଜ୍ଞାନର ଆଜ୍ଞା ପାଳନ କରୁଥାନ୍ତି । ଯାହା କିଛି ଦେଖୁଥାନ୍ତି ଅବିରାମ ଦ୍ରୁତ ଗତିରେ ତାଙ୍କ ଟିପାଖାତାରେ ଲେଖିରଖୁଥାନ୍ତି । ଠିକ୍ ତାଙ୍କ ଭଳି ନହେଲେ ବି ମୁଁ ସବୁ ଟିପି ରଖୁଥାଏ–ମୋର ମନର ଟିପା ବହିରେ ।

ଯେତେ ଦୂର ଆଖି ପାଏ ସମୁଦ୍ର ତଳର ସମଭୂମି କେଉଁଠି ଉଚ୍ଚ, କେଉଁଠି ବା ନୀଚ । ସ୍ଥାନେ ସ୍ଥାନେ ଅଦ୍ଭୁତ ଗୋଲ ଗୋଲ ସ୍ତୂପ ଭଳି ଢିପ ଜାଗା–ଯେଭଳି ଜାଗା ଉପରେ ଆମେ ଓହ୍ଲାଇଥିଲୁ । ପ୍ରତ୍ୟେକଟି ସ୍ତୂପ ଅପାର୍ଥିବ ଅବାସ୍ତବ ଆଲୁଅରେ

ଝଟକୁଛି । ଏଇ ସ୍ତୂପଗୁଡ଼ିକ ପାଖଦେଇ ଅଦ୍ଭୁତ ଅଜଣା ମାଛଦଳ ତୀର ଭଳି ଯିବା ଆସିବା କରୁଛନ୍ତି । ବିଜ୍ଞାନ ଆଜି ସୁଦ୍ଧା ସେମାନଙ୍କର ନାମ, ନିବାସ ଠିକଣା ଜାଣେନା । କୌଣସି ରଙ୍ଗ ବାଦ୍ ନାହିଁ, ତେବେ ଲାଲ ଓ କଳାହିଁ ବେଶି । ମାରାକଟ୍ ତାଙ୍କ ଉତ୍ତେଜନା ଚାପି ସେମାନଙ୍କୁ ପର୍ଯ୍ୟବେକ୍ଷଣ କଲେ ଓ ତାଙ୍କ ଟିପା ବହିରେ ଟିପି ରଖିଲେ ।

ପବନ ବିଶେଷ ଦୂଷିତ ହୋଇଉଠିବାରୁ ପୁଣି କିଛି ଅମ୍ଳଜାନ ବାହାରକରି ଆମେ ପ୍ରାଣ ବଞ୍ଚାଇଲୁ । ଆଶ୍ଚର୍ଯ୍ୟର କଥା ଆମମାନଙ୍କୁ ଭୋକକରୁଥିଲା—ସାଧାରଣ ଭୋକ ନୁହେଁ, ରାକ୍ଷସୀୟ ଭୋକ । ଭାଗ୍ୟକୁ ଦୂରଦର୍ଶୀ ମାରାକଟ୍ ମାଂସ ଓ ରୁଟିମଖନର ବ୍ୟବସ୍ଥା ରଖିଥିଲେ । କିନ୍ତୁ ଖାଇବା ପରେ ଆମର ବୋଧଶକ୍ତି ପୁଣି ପ୍ରଖର ହୋଇଗଲା । ଆମେମାନେ ଝରକା ପାଖରେ ବସିଥିଲୁ । ଶେଷଥର ପାଇଁ ଗୋଟାଏ ସିଗାରେଟ୍ ଖାଇବାକୁ ମନହେଉଥାଏ । ଠିକ୍ ଏହି ସମୟରେ ଏମିତି ଗୋଟିଏ ଜିନିଷ ମୋ ଦୃଷ୍ଟିରେ ପଡ଼ିଲା ଯାହାଫଳରେ ମୋ ମନ ଭିତରେ ଗୋଟାଏ ଅସମ୍ଭବ ଚିନ୍ତା ଓ ଆଶାର ଘୂର୍ଣ୍ଣିବାୟୁ ବୋହିଗଲା । ଯେଉଁ ସବୁ ହୁଙ୍କା ଓ ସ୍ତୂପଭଳି ଜାଗା କଥା କହିଚି ମୋ ଜଳାକବାଟି ସାମନାରେ ଗୋଟାଏ ବେଶ୍ ବଡ଼ ରକମର ସ୍ତୂପ ଥିଲା—ଆମ ପିଞ୍ଜରାରୁ ଅନ୍ଦାଜ ତିରିଶ ଫୁଟ ଭିତରେ । ତା' ଦେହରେ ଗୋଟାଏ ବିଶେଷ ରକମର ଚିହ୍ନ ଦେଖିବାକୁ ପାଇଲି । ଭଲକରି ଅନାଇ ଦେଖିବାରୁ ମନେହେଲା କିଛି ଦୂର ପରେ ପରେ ସେମିତି ଚିହ୍ନ ସ୍ତୂପକୁ ବେଢ଼ି ରହିଚି । ନିଶ୍ଚିତ ମୃତ୍ୟୁର ଏତେ ନିକଟକୁ ଆସି ଅନ୍ୟ କୌଣସି ବିଷୟରେ ସହଜରେ ମୁଣ୍ଡ ଖେଳାଇବାର ଇଚ୍ଛା ଥାଏ ନାହିଁ । କିନ୍ତୁ ହଠାତ୍ ଯେତେବେଳେ ମୁଁ ବୁଝିପାରିଲି ଯେ ସେଇ ଚିହ୍ନଗୁଡ଼ିକ ସେଇ ଉଚ୍ଚ ଜାଗା ଦେହରେ ଖୋଦିତ କାରୁକାର୍ଯ୍ୟ, ସେତେବେଳେ ମୁହୂର୍ତ୍ତକ ପାଇଁ ମୋ ନିଃଶ୍ୱାସ ବନ୍ଦ ହୋଇଗଲା । ବୁଝିବାକୁ ବାକି ରହିଲା ନାହିଁ ଯେ ସେ ଉଚ୍ଚଜାଗାଟି ପ୍ରକୃତରେ ମଣିଷ ତିଆରି ଗୋଟିଏ ସ୍ତୂପ, ଯଦିଚ ବର୍ତ୍ତମାନ ତାହା ଅନେକ କ୍ଷୟପ୍ରାପ୍ତ ହୋଇଚ ଏବଂ ତା'ର ଦେହ ଏକପ୍ରକାର କ୍ଷୁଦ୍ର ପ୍ରାଣୀ ଦ୍ୱାରା ଆଚ୍ଛାଦିତ । ମାରାକଟ୍ ଓ ସ୍କାନ୍‌ଲନ୍ ମୋ ଝରକା ପାଖରେ ଭିଡ଼ କଲେ । ସମ୍ପୂର୍ଣ୍ଣ ନିର୍ବାକ ହୋଇ ସେମାନେ ମଣିଷର ସର୍ବବ୍ୟାପୀ କର୍ମପ୍ରେରଣାର ଏହି ଚିହ୍ନଗୁଡ଼ିକ ଆଡ଼େ ଅନାଇ ରହିଲେ ।

ଶେଷରେ ସ୍କାନ୍‌ଲନ୍ ପାଟି କରି ଉଠିଲେ, 'ଏ ଖୋଦେଇ କାମ ଛଡ଼ା ଆଉ କିଛି ନୁହେଁ ! ଏଟା କୌଣସି କୋଠର ଚୂଡ଼ା ବୋଧହୁଏ । ତା' ହେଲେ ଅନ୍ୟଗୁଡ଼ିକ ମଧ୍ୟ ସେଇୟା । ଧରନ୍ତୁ ସାର୍, ଆମେ ପୂରା ଗୋଟାଏ ସହର ଉପରେ ଓହ୍ଲାଇପଡ଼ିଚେ !''

ମାରାକଟ୍ କହିଲେ, 'ଏହା ବାସ୍ତବିକ ଏକ ପ୍ରାଚୀନ ନଗରୀ । ଭୂତତ୍ତ୍ୱ କହେ ଯେ ଦିନେ ସମୁଦ୍ର ସବୁ ମହାଦେଶ ଥିଲେ ଏବଂ ମହାଦେଶ ସବୁ ଥିଲେ ସମୁଦ୍ର । ମିଶରର

ଲୋକମୁଖରେ ଏକ ପ୍ରାଚୀନ କିମ୍ବଦନ୍ତୀ ଶୁଣାଯାଏ । ଆଟଲାଣ୍ଟିକ୍ ନାମକ ମହାଦେଶ କୁଆଡ଼େ ସମୁଦ୍ର ତଳକୁ ଚାଲିଯାଇଥିଲା । ମୁଁ କେବେହେଁ ତାହା ବିଶ୍ୱାସ କରିନାହିଁ । କିନ୍ତୁ ବର୍ତ୍ତମାନ ଦେଖୁଚି ଏହା ସତ୍ୟ । ଗୋଟିଏ ବିରାଟ ଭୂମିକମ୍ପ ଫଳରେ ଯେ ଗୋଟାଏ ସମ୍ପୂର୍ଣ୍ଣ ମହାଦେଶ ସମୁଦ୍ର ଭିତରକୁ ଚାଲିଯାଇଥିଲା ତାହା ସେହି ଶୈଳଶିଳାର ଗଠନରୁ ହିଁ ପ୍ରମାଣିତ ହେଉଚି ।

ମୁଁ କହିଲି, 'ଏହି ସ୍ତୂପଗୁଡ଼ିକ ସବୁ ଏକପ୍ରକାରର । ମୋର ବର୍ତ୍ତମାନ ମନେହେଉଚ ଏଗୁଡ଼ିକ ଭିନ୍ନ ଭିନ୍ନ ଘରର ଚୂଡ଼ା ନୁହଁନ୍ତି, ଗୋଟିଏ ବିଶାଳ ପ୍ରାସାଦର ଛାତ ଉପରର ଗମ୍ବୁଜମାନ ।'

ସ୍କାନ୍‌ଲନ୍ କହିଲେ, 'ବୋଧହୁଏ ତୁମ କଥାହିଁ ଠିକ୍ । ଚାରି କ'ଣରେ ଚାରିଟା ବଡ଼ ଗମ୍ବୁଜ ରହିଛି, ଆଉ ସେଗୁଡ଼ିକର ମଝିରେ ମଝିରେ ଧାଡ଼ି ହୋଇ ରହିଛି ସାନ ସାନ ଗମ୍ବୁଜ ସବୁ । ନିହାତି ମନ୍ଦ ଖମାରଟିଏ ନୁହେଁ, ମେରିବ୍ୟାଙ୍କ୍ କାରଖାନାଟି ଯାକ ଏହା ଭିତରେ ସ୍ୱଚ୍ଛନ୍ଦରେ ରହିଯିବ ।'

ମାରାକଟ୍ କହିଲେ, 'ଉପରୁ କ୍ରମାଗତ ନାନା ପଦାର୍ଥ ତଳେ ପଡ଼ି ଘରର ଛାତ ଯାଏ ପୋତି ହୋଇ ପଡ଼ିଛି, କିନ୍ତୁ ନଷ୍ଟ ହୋଇନାହିଁ । ସମୁଦ୍ର ତଳର ତାପମାନ ସର୍ବଦା ୩୨° ଫାରେନ୍‌ହାଇଟର ନିକଟବର୍ତ୍ତୀ; ଏତେ ଥଣ୍ଡାରେ କ୍ଷୟ କ୍ରିୟାର କାର୍ଯ୍ୟ ଚଳିପାରେନାହିଁ । କିନ୍ତୁ ଏ କ'ଣ ! ଏସବୁ ତ କାରୁକାର୍ଯ୍ୟ ନୁହେଁ ମନେହୁଏ ଏସବୁ ଏକ ପ୍ରକାରର ଲିପି ଗମ୍ବୁଜ ଦେହରେ ଖୋଦିତ ହୋଇଛି ।'

ନିରୀକ୍ଷଣ କରି ଦେଖିଲୁ ତାଙ୍କ କଥା ଯେ ଠିକ୍ ଓ ସେଥିରେ କୌଣସି ସନ୍ଦେହ ନଥିଲା । ପ୍ରାୟ ପ୍ରତ୍ୟେକଟି ଚିହ୍ନ ବାରମ୍ବାର ଖୋଦିତ ହୋଇଥିଲା । ନିଶ୍ଚୟ ସେଗୁଡ଼ିକ କୌଣସି ଲୁପ୍ତ ବର୍ଣ୍ଣମାଳାର ଅକ୍ଷର । ମାରାକଟ୍ କହିଲେ, ମୁଁ ଏକସମୟରେ ଫିନିଶିଆର ପ୍ରାଚୀନ ଇତିହାସ ବିଷୟରେ କିଛି ପଢ଼ାଶୁଣା କରିଥିଲି । ଏହି ଅକ୍ଷରଗୁଡ଼ିକ ମୋ ପକ୍ଷରେ ସମ୍ପୂର୍ଣ୍ଣ ଅଚିହ୍ନା ନୁହେଁ । ଆମେ ଆଜି ଦେଖିଲେ, ବନ୍ଧୁ ପ୍ରାଚୀନ କାଳର ଗୋଟିଏ ଲୁପ୍ତ ସହରର ଧ୍ୱଂସାବଶେଷ । ଆମ ଜ୍ଞାନଭଣ୍ଡାରରେ ଏ ଆଶ୍ଚର୍ଯ୍ୟ ସଞ୍ଚୟ ଘେନି ଆମେ ମରିବାକୁ ଯାଉଛେ । ଏଥର ମୁଁ ବି କୁହେ ଯେତେ ଶୀଘ୍ର ସବୁ ଶେଷ ହୁଏ ସେତେ ଭଲ ।'

ଶେଷ ପାଇଁ ଆଉ ବିଳମ୍ବ ମଧ ନଥିଲା । ପବନଟା ଅଙ୍ଗାରକାମ୍ଳରେ ଏତେ ପୂରିଯାଇଥିଲା ଯେ ଏଥର ଯେତେବେଳେ ଅମ୍ଳଜାନ ନଳିର ମୁହଁ ଖୋଲିଦିଆହେଲା ସେତେବେଳେ ସେଇ ଭାରି ପବନର ଚାପ ଠେଲି ଅମ୍ଳଜାନ ଭଲରୂପେ ବାହାରି ପାରୁ ନ ଥାଏ । 'ସେଟି' ଉପରେ ଛିଦ୍ରାହୋଇ ଢୋକେ ଢୋକେ ପରିଷ୍କାର ପବନ ତେବେ ବି ମିଳୁଥିଲା, କିନ୍ତୁ ବିଷାକ୍ତ ଦୁର୍ଗନ୍ଧ ପବନର ସ୍ତରଟା କ୍ରମେ ଉପରକୁ ଉଠିଆସୁଥିଲା । ଡକ୍ଟର ମାରାକଟ୍

ଭଗବାନଙ୍କ ନିକଟରେ ଆତ୍ମସମର୍ପଣ ଭଙ୍ଗୀରେ ହାତ ଯୋଡ଼ିକ ଛାତି ଉପରେ ରଖି ମୁଣ୍ଡ ନୁଆଁଇଲେ । ସ୍କାନ୍‌ଲନ୍ ବିଲ୍‌କୁଲ୍ କାବୁ ହୋଇ ହାତ ଗୋଡ଼ ମେଲାଇ ତଳେ ପଡ଼ିଥିଲା । ମୋ ମୁଣ୍ଡ ମଧ ଭୀଷଣ ବୁଲାଉଥିଲା—ଛାତି ଉପରେ ଗୋଟାଏ ଅସହ୍ୟ ବୋଝ ଥିବାଭଳି ଲାଗୁଥିଲା । ମୁଁ ଆଖି ବୁଜିଲି । ମନେହେଉଥିଲା ଆଉ ଅଳ୍ପ ସମୟ ପରେ ହୁଏତ ଅଚେତ ହୋଇପଡ଼ିବି । ଯେଉଁ ଜଗତ ଛାଡ଼ି ଚାଲିଯାଉଚି ତାକୁ ଶେଷଥର ପାଇଁ ଦେଖିନେବାକୁ ଥରେ ଆଖି ଖୋଲିଲ । ଖୋଲିବାମାତ୍ରେ ଯାହା ଦେଖିଲି ସେଥିରେ ଭଗ୍ନସ୍ୱରରେ ଗୋଟାଏ ଚିତ୍କାର କରି ଟଳି ଟଳି ଉଠି ଛିଡ଼ାହେଲି । ଜଳାକବାଟ ଭିତର ଦେଇ ଆମକୁ ଚାହିଁ ରହିଚି ଗୋଟିଏ ମଣିଷର ମୁହଁ !

## ଚାରି

ଏ କ'ଣ ମୋର ମସ୍ତିଷ୍କ ବିକାର ? ମାରାକଟ୍‌ଙ୍କ କାନ୍ଧ ଧରି ଜୋର୍‌ରେ ହଲାଇଲି । ସେ ସିଧା ହୋଇ ବସି ସେ ଦୃଶ୍ୟ ଦେଖି ଅବାକ୍ ହୋଇ ଚାହିଁରହିଲେ । ସେ ବି ଯେତେବେଳେ ଦେଖିପାରୁଛନ୍ତି, ତେବେ ମୋର ନିଶ୍ଚୟ ଭ୍ରମ ହୋଇନାହିଁ । ମୁହଁଟା ଲମ୍ୱାଳିଆ, ଟିକିଏ କମ୍ ଗୋରା ବର୍ଣ୍ଣର, ଆଉ ସେଥିରେ ଗୋଜିଆ ଦାଢ଼ି । ଉଜ୍ଜ୍ୱଳ, ତୀକ୍ଷଣ ଦୃଷ୍ଟିରେ ସେ ଆମ ଅବସ୍ଥା ଟିକିନିଖି ଦେଖିନେଲେ । ତାଙ୍କ ମୁହଁ ଦେଖି ବୁଝାଯାଉଥିଲା, ସେ ମଧ କମ୍ ଆଶ୍ଚର୍ଯ୍ୟ ନୁହଁନ୍ତି । ଆମ ଆଲୁଅଗୁଡ଼ିକ ପୂରାଦମ୍‌ରେ ଜଳୁଥିଲା ସେତେବେଳେ । ଦୃଶ୍ୟଟା ଅବଶ୍ୟ ତାଙ୍କୁ ଖୁବ୍ ଆଶ୍ଚର୍ଯ୍ୟ ଓ ଅଦ୍ଭୁତ ମନେ ହୋଇଥିବ । ଏଣେ ନିଃଶ୍ୱାସ କଷ୍ଟରେ ମାରାକଟ୍‌ଙ୍କର ଓ ମୋର ମଧ ହାତ ଗଳା ପାଖକୁ ଚାଲିଗଲାଣି । ଦୁହିଁଙ୍କ ଛାତି କମାର ଭାତି ଭଳି ପଡ଼ୁଛି ଉଠୁଛି । ଆଗନ୍ତୁକ ଆମ ଆଡ଼େ ଥରେ ହାତ ହଲାଇ ଚାଲିଯିବାକୁ ଲାଗିଲେ ।'

ମାରାକଟ୍ ପାଟିକରି ଉଠିଲେ, 'ଆମକୁ ଛାଡ଼ି ଚାଲିଗଲେ ?'

ମୁଁ କହିଲି, 'କିମ୍ୱା ହୁଏତ ଲୋକ ଡାକି ଆଣିବାକୁ ଗଲେ । ସ୍କାନ୍‌ଲନ୍‌କୁ ଚୌକି ଉପରକୁ ଉଠାଇଦେବା ଚାଲନ୍ତୁ, ତଳେ ପଡ଼ିଥିଲେ ବିଚରା ମରିଯିବ ।'

ସ୍କାନ୍‌ଲନ୍‌କୁ ଆମେ ଧରାଧରି କରି 'ସେଟି' ଉପରକୁ ଉଠାଇନେଇ ତାହାର ମୁଣ୍ଡକୁ ଗଦି ଉପରେ ଠେଲି ରଖିଲୁ । ତା' ମୁହଁ ସେତେବେଳେ ପାଉଁଶିଆ ପଡ଼ିଯାଇଥାଏ । ବିକାର ଯୋଗୁଁ ସେ ବିଡ଼ିବିଡ଼ି ବକୁଥାଏ । ଭଙ୍ଗା ଗଳାରେ କହିଲି, 'ଏବେ ବି ଆମର ଆଶା ଅଛି ।' କିନ୍ତୁ ଏ କ'ଣ ମୋର ସ୍ୱର ? ଏତେ ବିକୃତ ? ମାରାକଟ୍ ପାଟିକରି କହିଲେ, 'କିନ୍ତୁ ଏ ପାଗଳାମ ! ସମୁଦ୍ରତଳେ ମଣିଷ ରହିବେ କିପରି ? ଆମେ ଦି'ଜଣ ଏକା ସାଙ୍ଗରେ ପାଗଳ ହୋଇଯାଇଛେ ।'

ସେଇ ଅପାର୍ଥିବ ମ୍ଳାନ ଆଲୁଅରେ ଚାରିଆଡ଼ର ନିର୍ଜନ ନିରାନନ୍ଦ ଦୃଶ୍ୟ ଦେଖି ମନେହେଲା ହୁଏତ ମାରାକଟ୍‌ଙ୍କ କଥାହିଁ ଠିକ୍ । ତା'ପରେ ଦେଖିଲି ଦୂରରେ ଛାୟାପରି

କିଏ ବା କେଉଁମାନେ ଆସୁଛନ୍ତି । କ୍ରମେ ଛାୟାଗୁଡ଼ିକ ସ୍ପଷ୍ଟ ହୋଇ ମଣିଷ ମୂର୍ତ୍ତି ନେଲେ । ଦଳେଲୋକ ସମୁଦ୍ର ତଳରେ ଚାଲି ଶୀଘ୍ର ଗତିରେ ଆମ ଆଡ଼କୁ ଆସୁଛନ୍ତି । ଟିକିଏ ପରେ ସେମାନେ ଆମ ପିଞ୍ଜରା ସାମନାରେ ଛିଡ଼ାହୋଇ ଆମ ଆଡ଼କୁ ଆଙ୍ଗୁଳି ଦେଖାଇ, ହାତ ହଲାଇ ପରସ୍ପର ମଧ୍ୟରେ ଇସାରା ଦ୍ୱାରା ପରାମର୍ଶ କରିବାକୁ ଲାଗିଲେ । ଦଳ ମଧ୍ୟରେ ଜଣେ ବେଶ୍ ମାତବର ଭଳି ଦିଶୁଥିଲେ । ଜବରଦସ୍ତ ଚେହେରା, ପ୍ରକାଣ୍ଡ ମୁଣ୍ଡ, ଆଉ ମୁହଁରେ ଘନ ଦାଢ଼ି । ସେ ଅତିଶୀଘ୍ର ଆମର ଗୋଲ ପିଞ୍ଜରାଟି ଚାରିପଟ ବୁଲି ଦେଖିନେଲେ । ଆମେ ଯେଉଁ ଗମ୍ବୁଜ ଉପରେ ଓହ୍ଲାଇଥିଲୁ ପିଞ୍ଜରାର ତଳଟା ତାଠୁ ଅନେକ ବାହାରି ଥିବାରୁ ସେ ସହଜରେ ଦେଖିପାରିଲେ ଯେ ପିଞ୍ଜରା ତଳେ କବ୍‌ଜାବାଲା ସାନ ଦୁଆରଟିଏ ଅଛି । ତାଙ୍କ କଥାରେ ଜଣେ କେଉଁଠିକି ଦୌଡ଼ିଗଲା ଓ ସେ ନିଜେ ଆଦେଶ ଦେବା ଭଙ୍ଗୀରେ ଦୁଆରଟି ଖୋଲିବାକୁ ବାରମ୍ବାର ଇସାରାଦେଲେ ।

ମୁଁ କହିଲେ, 'ମନ୍ଦ କ'ଣ, ଏମିତି ଦମ୍ ବନ୍ଦ ହୋଇ ମରୁଛୁ, ସେମିତିରେ ବୁଡ଼ି ମରିବୁ ନହେଲେ ।'

ମାରାକଟ୍ କହିଲେ, 'ଆମେ ବୁଡ଼ି ନ ମରିପାରୁ । ତଳୁ ପାଣି ପଶିଲେ ଭିତରର ଘନ ବାୟୁର ଚାପ ଠେଲି ବେଶି ଉପରକୁ ଉଠି ପାରିବ ନାହିଁ । ସ୍କାନ୍‌ଲନ୍‌କୁ ଟିକିଏ ବ୍ରାଣ୍ଡି ଦିଅ, ଥରେ ଶେଷ ଚେଷ୍ଟା କରାଯାଉ ।'

ମୁଁ ସ୍କାନ୍‌ଲନ୍‌ର ଗଳାବାଟେ କିଛି ବ୍ରାଣ୍ଡି ଢାଳି କୌଣସି ପ୍ରକାରେ ଗିଳାଇଦେଲି । ସେ ବଲବଲ କରି ଚାରିଆଡ଼କୁ ଚାହିଁଲା । ମାରାକଟ୍ ଓ ମୁଁ ଦୁହେଁ ମିଶି ତାକୁ 'ସେଟି' ଉପରେ ସିଧାକରି ବସାଇଲୁ । ସେତେବେଳ ପର୍ଯ୍ୟନ୍ତ ତା'ର ଆବେଶଟା ପୂରା କଟିନଥାଏ । ଯାହାହେଉ କୌଣସି ପ୍ରକାରେ ସେତେବେଳକାର ଅବସ୍ଥାଟା ଅଳ୍ପ କଥାରେ ତାକୁ ମୁଁ ବୁଝାଇଦେଲି ।

ମାରାକଟ୍ କହିଲେ, 'ବ୍ୟାଟେରିଗୁଡ଼ିକରେ ପାଣି ଲାଗିଲେ କ୍ଲୋରିନ୍ ବିଷକ୍ରିୟା ଘଟିପାରେ । ପବନର ନଳିଗୁଡ଼ିକ ଖୋଲିଦିଅ, କାରଣ ବାୟୁର ଚାପ ଭିତରେ ଯେତେ ବେଶି ହେବ ପାଣି ସେତେ କମ୍ ପଶିପାରିବ । ଏଥର ଆସ ମୋ ସହିତ କବାଟଟି ଟାଣ ।'

ମୁଁ ସମସ୍ତ ଶକ୍ତି ଖଟାଇ ଟାଣିବା ମାତ୍ରକେ ଗୋଲ କବାଟଟା ଖୋଲିଗଲା । ମୋର ମନେହେଉଥିଲା ଆମେ ଆତ୍ମହତ୍ୟା କରୁଚୁ । ସବୁଜପାଣି କଳକଳ ଶବ୍ଦରେ ଆଲୁଅରେ ଚିକଚିକି କରୁକରୁ ଭିତରକୁ ପଶିଆସିଲା । ଦେଖୁଦେଖୁ ପାଣି ଆମର ଗୋଡ଼ପର୍ଯ୍ୟନ୍ତ ଉଠିଲା, ତା'ପରେ କ୍ରମେ ଅଣ୍ଟା ପର୍ଯ୍ୟନ୍ତ—ତା' ଉପରକୁ ଆଉ ଉଠିଲା ନାହିଁ । କିନ୍ତୁ ବାୟୁ ଚାପ ଅସହ୍ୟ ଲାଗୁଥାଏ । ଆମ ମୁଣ୍ଡ ଝିମ୍‌ଝିମ୍ ହୋଇଗଲା, କାନ ତ ଫାଟି ଯିବା

ଭଳି ଲାଗୁଥାଏ । ଏ ଅବସ୍ଥାରେ ବେଶି ବେଳ ବଞ୍ଚିବା ଅସମ୍ଭବ । କୌଣସିମତେ ଛିଡ଼ା ହୋଇ ରହିଲୁ—ଜଳ ମଧ୍ୟରେ ଯେପରି ପଡ଼ିନଯାଉ ।

ଛିଡ଼ାହୋଇ ରହିବାରୁ ବାହାରେ କ'ଣ ହେଉଚି ଆମେ ଜଳାକବାଟି ବାଟେ ଆଉ ଦେଖିପାରିଲୁ ନାହିଁ । ଆମର ଉଦ୍ଧାରପାଇଁ କି ଚେଷ୍ଟା ହେଉଛି ତା' ମଧ୍ୟ ବୁଝିପାରିଲୁ ନାହିଁ । ସତରେ ଆମେ ଉଦ୍ଧାର ପାଇବାର କୌଣସି ଉପାୟ ଯେ ହୋଇପାରେ ତାହା ଏକଦମ୍ କଳ୍ପନାତୀତ ବୋଲି ମନେହେଉଥିଲା । ହଠାତ୍ ଦେଖିଲି ପାଣି ଭିତରୁ ସେଇ ମାତବର ଚେହେରାର ଲୋକଟି ଆମ ଆଡ଼େ ଅନାଇ ରହିଛି । ତା' ପରେ ସେଇ ଗୋଲ ଦୁଆରଟି ଟପି ସେ 'ସେଟି' ଉପରେ ଆମ ପାଖରେ ଛଡ଼ାହେଲେ । ବାଙ୍ଗର ଲୋକଟି, ଉଚ୍ଚରେ ଆମ କାନ୍ଧ ସମାନ ହେବେ, କିନ୍ତୁ ବେଶ୍ ବ୍ୟକ୍ତିତ୍ୱ-ସମ୍ପନ୍ନ ଚେହେରା । ତାଙ୍କର ବଡ଼ ବଡ଼ ପିଙ୍ଗଳ ଆଖିରେ ଆଶ୍ୱସଭରା ଦୃଷ୍ଟି ।

ଏତେବେଳେ ମୁଁ ଗୋଟାଏ ଅତି ଆଶ୍ଚର୍ଯ୍ୟ ବ୍ୟାପାର ଲକ୍ଷ୍ୟ କଲି । ମଣିଷଟିର—ଯଦି ସେ ଆମ ଭଳି ମଣିଷ ହୋଇଥାଏ—ମୁଣ୍ଡ ଆଉ ଦେହ ରହିଚି ଗୋଟାଏ ସ୍ୱଚ୍ଛ ଢାଙ୍କୁଣି ଭିତରେ, କେବଳ ହାତ ଗୋଡ଼ ବାହାରେ ଅଛି । ଢାଙ୍କୁଣି ଏତେ ସୂକ୍ଷ୍ମ ଯେ ପାଣି ଭିତରେ ତାହା ଦେଖାଯାଏ ନାହିଁ, କେବଳ ବର୍ତ୍ତମାନ ଜଳ ବାହାରେ ଥିବାରୁ ତାହା ରୂପା ଭଳି ଚକ୍‌ଚକ୍ କରୁଛି । ଢାଙ୍କୁଣି ଭିତରେ ତାହାର ଦଇକାନ୍ଧ ଉପରେ ଦି'ଟା ବାକ୍‌ସ ଭଳି କ'ଣ ବସାହୋଇଚି । ବାକ୍‌ସ ଦୁଇଟି ଦେହରେ ଅନେକଗୁଡ଼ିଏ କଣା । ପୁଣି ଦେଖିଲି ପିଞ୍ଜରାର ଗୋଲ ଦୁଆର ବାଟେ ଜଣଙ୍କ ମୁଣ୍ଡ ଉଙ୍କିମାରିଛି । ପ୍ରକାଣ୍ଡ କାଚର ବୁଦ୍‌ବୁଦ ଭଳି କ'ଣ ଗୋଟାଏ ଜିନିଷ ଦୁଆର ବାଟେ ଭିତରକୁ ଠେଲିଦିଆଗଲା । ତା'ପରେ ଆଉ ଗୋଟେ, ପୁଣି ଗୋଟେ । ତିନିଟା ସେହିପରି ଜିନିଷ ପାଣି ଉପରେ ଭାସିବାକୁ ଲାଗିଲା । ତା'ପରେ ଆସିଲା ଛଅଟି ଛୋଟ ଛୋଟ ବାକ୍‌ସ । ତତ୍‌ସଂଲଗ୍ନ ପଟିମାନଙ୍କ ଦ୍ୱାରା ଏହି ଅଜଣା ଜଗତର ବନ୍ଧୁ ସେଗୁଡ଼ିକୁ ଆମ ପ୍ରତ୍ୟେକଙ୍କ କାନ୍ଧରେ ବାନ୍ଧିଦେଲେ । ସେତେବେଳେ ମୋର ମନେହେଲା ଏହି ଆଶ୍ଚର୍ଯ୍ୟ ଲୋକମାନଙ୍କ ଜୀବନଧାରଣ କୌଣସି ପ୍ରାକୃତିକ ନିୟମ ବହିଭର ବ୍ୟାପାର ନୁହେଁ । ହୁଏତ ସେହି ଦୁଇଟା ବାକ୍‌ସ ମଧ୍ୟରୁ ଗୋଟିକ ସାହାଯ୍ୟରେ କୌଣସି ନୂଆ ଉପାୟରେ ଅମ୍ଳଜାନ ପ୍ରସ୍ତୁତ ହୁଏ ଏବଂ ଅନ୍ୟଟି ସାହାଯ୍ୟରେ ନିଃଶ୍ୱାସରୁ ବାହାରୁଥିବା ଅଙ୍ଗାରକାମ୍ଳ ଗ୍ୟାସ ଶୋଷିନିଆଯାଏ । ସେଗୁଡ଼ିକ ବନ୍ଧାହେବା ପରେ ସେ ସ୍ୱଚ୍ଛ ପୋଷାକଗୁଡ଼ିକ ଭିତରେ ଆମ ମୁଣ୍ଡ ଗଳାଇ ପିନ୍ଧାଇ ଦିଆଗଲା ଓ ପଟି ଦ୍ୱାରା ଆମ ଅଣ୍ଟା ଓ କାଖତଳିରେ ଦୃଢ଼ଭାବରେ ବାନ୍ଧି ଦିଆଗଲା, ଯେପରି ବୁନ୍ଦାଏ ପାଣି ଗଳିନପାରେ । ଦେଖିଲି ମାରାକଟ୍ ତାଙ୍କ କାଚପୋଷାକ ଭିତରୁ ତାଙ୍କର ସେଇ ଶାଣିତ ତୀକ୍ଷ୍ଣ ଦୃଷ୍ଟିଦ୍ୱାରା ମୋ ଆଡ଼େ ଅନାଇଛନ୍ତି । ସ୍କାନ୍‌ଲନ୍‌ର ହସହସ ମୁହଁ ଦେଖି ବୁଝିଲି ଏମାନଙ୍କର ଏଇ ଯନ୍ତ୍ର କୃପାରୁ ସେ ପୁଣି ସେଇ ଆମୋଦପ୍ରିୟ ବିଲ୍ ସ୍କାନ୍‌ଲନ୍ ।

ଆମ ଉଦ୍ଧାରକର୍ତ୍ତା ଆମ ମୁହଁଆଡ଼େ ଅନାଇ ରହିଚନ୍ତି । ତାଙ୍କ ଗମ୍ଭୀର ଭାବ ସତ୍ତ୍ୱେ ସେ ଯେ ଖୁସିହୋଇଚନ୍ତି ତା' ବୁଝାପଡୁଥିଲା । ତାଙ୍କ ପିଛା ଧରି ପିଞ୍ଜରାରୁ ବାହାରିଯିବା ପାଇଁ ସେ ସଙ୍କେତ ଦେଲେ । ଆମକୁ ଦୁଆର ପାରି କରାଇନେବା ପାଇଁ ତଜନେ ସରିକି ହାତ ପ୍ରସାରିତ ହେଲା । ସେ ଅଚିହ୍ନା ହାତଗୁଡ଼ିକ ଧରି ଆମେ ସାଗରତଳର ସେଇ ଅଜଣା ରାଜ୍ୟରେ ପାଦ ପକାଇଲୁ ।

ସେ ସମୟର ଘଟଣା ଭାବିଲା ବେଳକୁ ମୋତେ ଏବେବି ଆଶ୍ଚର୍ଯ୍ୟ ଲାଗେ । ପାଞ୍ଚ ମାଇଲ ଗଭୀର ପାଣି ତଳେ ଆମେ ତିନିଜଣ । କଷ୍ଟ କିଛି ନାହିଁ, ବେଶ୍ ସ୍ୱଚ୍ଛନ୍ଦରେ ଚଲାବୁଲା କରୁଛୁ । ଯାହା ଘେନି ବହୁ ବିଜ୍ଞାନୀ ମୁଣ୍ଡ ଖରଚ କରିଛନ୍ତି କାହିଁ ସେ ବିରାଟ ଜଳର ଚାପ ? ଆମ ଚାରିପଟରେ ଯେଉଁ ବିଭିନ୍ନ ରଙ୍ଗର ମାଛମାନେ ଅକ୍ଲେଶରେ ଘୂରି ବୁଲୁଥିଲେ ସେମାନଙ୍କଠାରୁ ଆମେ ଊଣା ଆରାମରେ ନଥିଲୁ । ଅବଶ୍ୟ ଆମ ଦେହ ସେଇ କାଚ ପୋଷାକ ଭିତରେ ସୁରକ୍ଷିତ ଥିଲା, ତା'ହେଲେ ବି ଆମ ହାତ ଗୋଡ଼ ତ ଖୋଲାଥିଲା । ହାତ ଗୋଡ଼କୁ ଘେରି ବେଶ୍ ଟିକିଏ ଚାପ ଅନୁଭବ କରିବା ଛଡ଼ା ଆଉ କିଛି ବୋଧହଉନଥିଲା । ଆଉ ସେ ଚାପବୋଧ ବି କ୍ରମେ ସହ୍ୟ ହୋଇଯାଉଥିଲା । ସମସ୍ତେ ଏକା ସାଙ୍ଗରେ ଛିଡ଼ା ହୋଇ ଆମେ ଛାଡ଼ିଆସିଥିବା ସେଇ ଗୋଲ ପିଞ୍ଜରା ଆଡ଼କୁ ଅନାଇ ମନରେ କି ଅପୂର୍ବ ବିସ୍ମୟ ଅନୁଭବ କରୁଥିଲୁ ! ଆଲୁଅ ସଇଚ୍‌ଗୁଡ଼ିକ ଆମେ ଖୋଲି ରଖିଆସିଥିଲୁ । ପିଞ୍ଜରାର ଦୁଇପଟରେ ହଳଦିଆ ଆଲୁଅର ସୁଅ ଛୁଟିଥାଏ । ସେ ଏକ ଅପରୂପ ଦୃଶ୍ୟ । ଆମେ ଆଶ୍ଚର୍ଯ୍ୟ ହୋଇ ଏହି ସବୁ ଦେଖୁଥିବା ସମୟରେ ସେଇ ନେତୃସ୍ଥାନୀୟ ବ୍ୟକ୍ତିଟି ମାରାକଟ୍‌ଙ୍କୁ ଧରି ଆଗେଇଲେ । ଆମେ ସେମାନଙ୍କ ପଛେ ପଛେ ଜଳରାଜ୍ୟର ସେଇ ପଙ୍କ ଭିତର ଦେଇ ଭାରୀ ଭାରୀ ପାଦ ପକେଇ ଚାଲିଲୁ ।

ଏତିକିବେଳେ ଏପରି ଘଟନା ଘଟିଲା ଯେଉଁଥିରେ ଆମର ଅଦ୍ଭୁତକର୍ମା ସଙ୍ଗୀମାନେ ଯେତିକି ଆଶ୍ଚର୍ଯ୍ୟ ହେଲେ ଆମେ ବି ସେତିକି ଆଶ୍ଚର୍ଯ୍ୟ ହେଲୁ । ପ୍ରଥମେ ଆମ ମୁଣ୍ଡ ଉପରେ ଅନେକ ଉଚ୍ଚରେ ଛୋଟିଆ କାଳିଆ ହୋଇ କ'ଣ ଗୋଟାଏ ଦିଶିଲା । ଆମ ପୃଥିବୀର ଆକାଶଟା ଯେମିତି ନୀଳ, ଏଠାକାର ଏହି ଜଳର ଆକାଶ ସେମିତି କଳା । ଏହି କଳା ଆକାଶ ଭିତରୁ ସେଇ ଜିନିଷଟା ଦୋହଲି ଦୋହଲି ଓହ୍ଲାଇ ଆସି ଆମର ଅତି ନିକଟରେ ପଡ଼ିଲା । ସେଟା ଆଉ କିଛି ନୁହେଁ, 'ଷ୍ଟ୍ରାଟ୍‌ଫୋର୍ଡ୍'ର ଓଳମ ତାରର ସୀସା—ଯେଉଁ ଅତଳ ସମୁଦ୍ରଖାତ ଉଦ୍ଦେଶ୍ୟରେ ଆମ ଅଭିଯାନ ହୋଇଥିଲା ତାହାରି ଗଭୀରତା ମାପିବା ପାଇଁ ଆମ ପଛେ ପଛେ ଉପସ୍ଥିତ । କିନ୍ତୁ ତାହା ଯେ ଏକଦମ୍ ଆମ ଗୋଡ଼ ପାଖରେ ଆସି ପଡ଼ିବ ତା' ହୁଏତ ଜାହାଜର ଲୋକମାନେ ସ୍ୱପ୍ନରେ ସୁଦ୍ଧା ଭାବିନଥିବେ । ସୀସାଟା ସ୍ଥିର ଭାବରେ ସିନ୍ଧୁମଳ ଉପରେ ପଡ଼ିରହିଲା ।

ମନେହେଲା, ସେଟା ଯେ ତଳ ପାଇଲାଣି ତାହା ବୋଧହୁଏ 'ଷ୍ଟ୍ରାଟ୍‌ଫୋର୍ଡ୍'ର କେହି ଜାଣିପାରିନାହାନ୍ତି । ଓଲମ ତାରଟା ସିଧା ଉପରକୁ ଉଠିଯାଇଚି । ତାର ଏ ମୁଣ୍ଡରେ ଆମେ ଓ ସେ ମୁଣ୍ଡରେ ଆମ ଜାହାଜର ଡେକ୍-ମଝିରେ ପାଞ୍ଚ ମାଇଲ ପାଣିର ବ୍ୟବଧାନ । ଆହା, ଯଦି ଗୋଟାଏ ଚିଠି ଲେଖି ତାରଟାରେ ବାନ୍ଧିଦେଇ ପାରନ୍ତି ! ଆମେ ଯେ ଅଦ୍ୟାପି ସୁସ୍ଥ ଦେହରେ ବଞ୍ଚିରହିଛୁ ଏ ଖବରଟା କ'ଣ କୌଣସି ପ୍ରକାରେ ପଠାଯାଇ ପାରିବ ନାହିଁ ? ମୋ କୋଟ୍‌ଟା କାଚପୋଷାକ ଭିତରେ ରହିଥିବାରୁ ତା' ପକେଟକୁ ହାତ ଯାଇ ପାରିବ ନାହିଁ, କିନ୍ତୁ ଅଣ୍ଟାରୁ ତଳକୁ ଖୋଲା ଥିଲା ଏବଂ ମୋର ରୁମାଲଟା ଦୈବାତ୍ ପେଣ୍ଟ ପକେଟରେ ଥିଲା । ଓଲମ-ତାରର ସ୍ୱୟଂକ୍ରିୟ ଯନ୍ତ୍ର ବ୍ୟବସ୍ଥା ଅନୁସାରେ ସୀସାଟି ନିଜେ ନିଜେ ତାରରୁ ଫିଟିଯାଏ । ତା' ଆଗରୁ ମୁଁ ରୁମାଲ ବାହାରକରି ସୀସାର ଟିକିଏ ଉପରକୁ ତାରରେ ବାନ୍ଧିଦେଲି । ଟିକିଏ ପରେ ଦେଖିଲି ମୋ ଧଳା ରୁମାଲଟି ଉପରକୁ ଦ୍ରୁତ ବେଗରେ ଛୁଟିଚାଲିଚି । ଯେଉଁ ଜଗତ ହୁଏତ ମୁଁ ଆଉ ଦେଖିପାରିବିନାହିଁ, ରୁମାଲଟି ସେଇ ଜଗତକୁ ଫେରିଯାଉଚ । ଆମର ନୂଆ ବନ୍ଧୁମାନେ ପଞ୍ଚସ୍ତରି ପାଉଣ୍ଡ ଓଜନର ସେଇ ସୀସାକୁ କୌତୂହଳ ସହ ପରୀକ୍ଷା କଲେ ଏବଂ ସାଙ୍ଗରେ ନେଇ ଚାଲିଲେ ।

ଗମ୍ବୁଜ ଗୁଡ଼ିକ ପାଖଦେଇ ଅଙ୍କେଇ ବଙ୍କେଇ ଚାଲି ପ୍ରାୟ ଦୁଇଶହ ଗଜ ଯିବା ପରେ ଆମେ ଗୋଟିଏ ଦୁଆର ସାମନାରେ ପହଞ୍ଚିଲୁ । ଦୁଆରଟି ସାନ ଓ ସମଚତୁଷ୍କୋଣ । ତାହାର ଦୁଇ ପାଖରେ ଖୁମ୍ବ ଏବଂ ଉପର ଭାଗରେ ଖୋଦେଇ ହୋଇ ଲେଖାଥିବା ଭଳି ମନେହେଲା । ଦୁଆର କବାଟ ଖୋଲାଥିଲା । ଆମେ ସେ ବାଟେ ଯାଇ ଗୋଟାଏ ବେଶ୍ ବଡ଼ ଖାଲି ବଖରା ଭିତରେ ପହଞ୍ଚିଲୁ । ଦୁଆରର କବାଟ ଶୋ-କେସ୍‌ର ଟଣା କବାଟ ଭଳି । କାନ୍ଥରେ ଲାଗିଚ ହାତରେ ଟାଣିବା ପାଇଁ ଗୋଟିଏ ହାଣ୍ଡଲ । ଆମେ ସେ ବଖରାରେ ପଶିବା ମାତ୍ରେ ସେଟା ଟାଣି କବାଟ ବନ୍ଦକରିଦିଆହେଲା । ଅଳ୍ପ କେଇ ମିନିଟ ଛିଡ଼ା ହେବା ପରେ ମନେହେଲା କେଉଁଠି ଗୋଟାଏ ଶକ୍ତିମାନ୍ ପମ୍ପ ଚାଲିଚ । ଆମେ ଅବଶ୍ୟ ଆମ କାଚ ପୋଷାକ ଭିତରୁ କୌଣସି ଶବ୍ଦ ଶୁଣିବାକୁ ପାଇଲୁନାହିଁ, କିନ୍ତୁ ଦେଖିଲୁ ଆମ ମୁଣ୍ଡ ଉପରେ ଥିବା ଜଳ ପଉନ ଅନାଉ ଅନାଉ ଖସିଆସିଲା । ପନ୍ଦର ମିନିଟ୍ ଭିତରେ ଦେଖିଲୁ ଆମେ ପଥରର ଭିଜା ଚଟାଣ ଉପରେ ଛିଡ଼ା ହୋଇଚ ଓ ଆମ ନୂତନ ବନ୍ଧୁମାନେ ଆମର ସ୍ୱଚ୍ଛ ପୋଷାକ ଗୁଡ଼ିକ ଖୋଲିବାରେ ବ୍ୟସ୍ତ । ତା'ପରେ ଆମେ ସେଇ ବଖରାରେ ଛିଡ଼ାହୋଇ ସଂପୂର୍ଣ୍ଣ ବିଶୁଦ୍ଧ ବାୟୁରେ ନିଃଶ୍ୱାସ ନେବାକୁ ଲାଗିଲୁ । ଘରଟି ଆଲୁଅରେ ଉଜ୍ଜ୍ୱଳ ଏବଂ ବେଶ୍ ଗରମ । ଅତଳସ୍ପର୍ଶୀ ସମୁଦ୍ର ଗହ୍ୱର ବାସିନ୍ଦାମାନେ ହସହସ ମୁହଁରେ କଥା କହୁ କହୁ ଆମ ଚାରିପଟେ ବେଢ଼ିଗଲେ । ସେମାନଙ୍କ ହାତହଲା ଓ ପିଠିଥାପୁଡ଼ାରେ ଆମେ ଅସ୍ଥିର । ସେମାନେ କଥାବାର୍ତ୍ତା

ହେଉଥିଲେ ଏକ ଅଦ୍ଭୁତ ଖରଡ଼ା ଭାଷାରେ–ଯାହାର ଆବାଜ ଅନେକଟା ଲୁହା ଉପରେ ଉହା ଘଷିବା ଭଳି । କୌଣସି ଗୋଟିଏ କଥା ବି ଅବଶ୍ୟ ଆମର ବୋଧଗମ୍ୟ ନ ଥିଲା, କିନ୍ତୁ ପୃଥିବୀର ଅନ୍ତଃସ୍ଥଳରେ ପାଣି ତଳେ ବି ମୁହଁର ହସ ଓ ଆଖିର ଚାହାଣିର ଭାଷା ମଣିଷ ବୁଝିପାରେ । କାଚ ପୋଷାକଗୁଡ଼ିକ କାନ୍ଥରେ ଥିବା ନମ୍ବର ଦିଆ କଣ୍ଟାରେ ଓହଳାଇ ରଖାଗଲା । ତା'ପରେ ସେମାନଙ୍କ ମଧ୍ୟରୁ ଜଣେ ଆମ ସାମନାରେ ବାଟ ଦେଖାଇ, କେହି ବା ଆମକୁ ପ୍ରାୟ ଠେଲି ଭିତରର ଗୋଟାଏ ଦୁଆର ଆଡ଼କୁ ନେଇଗଲେ । ସେହି ଦୁଆର ବାଟେ ଯାଇ ଆମେ ଗୋଟାଏ ଖୁବ୍ ଲମ୍ବା ଡାଲୁ ବାରଣ୍ଡାରେ ପହଞ୍ଚିଲୁ । କବାଟଟା ବନ୍ଦ କରିଦିଆଗଲା । ସେତେବେଳେ ଆଉ ବୁଝିବାର ଉପାୟ ରହିଲା ନାହିଁ ଯେ ଆମେ ଆଟ୍‌ଲାଣ୍ଟିକ ମହାସାଗର ତଳେ ଗୋଟିଏ ଅଜଣା ଜାତିର ଅତିଥି; ନିଜ ଜଗତଠାରୁ ଚିରଦିନ ପାଇଁ ବିଚ୍ଛିନ୍ନ ।

ଅସମ୍ଭବ ପରିଶ୍ରମ ପରେ ହଠାତ୍ ଆରାମ ପାଇବାରୁ କ୍ଳାନ୍ତିରେ ଆମେ ମୃତପ୍ରାୟ ହୋଇଗଲୁ । ଏପରିକି ବିଲ୍ ସ୍କାନ୍‌ଲନ୍, ଯାହାକୁ ହର୍‌କିଉଲିସ୍‌ର ପକେଟ୍ ସଂସ୍କରଣ କହିଲେ ଭୁଲ ହେବ ନାହିଁ, ସେ ବି ପାଦ ଓଟାରି ଓଟାରି ଚାଲୁଥିଲା । ମାରାକଟ୍ ଆଉ ମୁଁ ତ ଆମର ସଙ୍ଗୀମାନଙ୍କ ଉପରେ ଭରାଦେଇ ଚାଲିବାକୁ ପାଇ କୃତକୃତ୍ୟ ମଣୁଥିଲୁ । ତେବେ ତା'ରି ଭିତରେ ଯେତେଦୂର ସମ୍ଭବ ସବୁ ଟିକିନିଖି ଦେଖିନେବାକୁ ଛାଡୁନଥିଲି । ପବନଟା ଯେ ଗୋଟାଏ ଯନ୍ତ୍ର ସାହାଯ୍ୟରେ ତିଆରି ହେଉଚି ତାହା ସ୍ପଷ୍ଟ ବୁଝାଯାଉଥିଲା, କାରଣ କାନ୍ଥ ଦେହରେ ଗୋଲ ଗୋଲ ଗାତ ବାଟେ ଝଲକାଏ ଝଲକାଏ ପବନ ଭିତରକୁ ପ୍ରବେଶ କରୁଥିଲା । ଦେଖିଲି ଆଲୁଅର ବ୍ୟାପ୍ତି ଚାରିଆଡ଼େ ସମାନ । ବୁଝିଲି ଇଉରୋପର ଇନ୍‌ଜିନିୟରମାନେ ଲ୍ୟାମ୍ପ୍ ଓ ଫିଲାମେଣ୍ଟ ବାଦ୍‌ଦେଇ କେବଳ ପ୍ରତିପ୍ରଭା ସାହାଯ୍ୟରେ ଆଲୋକ ସୃଷ୍ଟିର ଉପାୟ ବିଷୟରେ ଯେଉଁ ଚିନ୍ତା କରୁଛନ୍ତି ଏ ତାହାରି ଗୋଟାଏ ବଡ଼ ରକମ ନମୁନା । * ବାରନ୍ଦାର କାର୍ନିସ୍ ଉପରେ ଝୁଲୁଥିବା କାଚର ଲମ୍ବା ଲମ୍ବା ଟଉବ୍ ଭିତରେ ଏହି ଆଲୁଅ ଜଳୁଥିଲା । ବାରଣ୍ଡା ଶେଷରେ ଗୋଟିଏ ପ୍ରକାଣ୍ଡ 'ହଲ' । ସେଠାରେ ମୋଟା ଗାଲିଚା ବିଛାହୋଇଚ । ଗିଲଟିକରା କୁର୍ସି ଓ ଡାଲୁ ସୋଫାରେ ବଖରାଟି ସଜ୍ଜିତ । ଦେଖିଲେ ମିଶର ଦେଶର କୌଣସି ସମାଧିଗୃହରେ ରହିଲା ଭଳି ମନେହେବ । ସେତେବେଳେ ଆଉ ସମସ୍ତଙ୍କୁ ବିଦାୟ ଦେଇ ରହିଲେ କେବଳ ଆମର ବନ୍ଧୁ ସେହି ବହଳ-ଦାଢ଼ିଆ ବ୍ୟକ୍ତିଟି ଓ ତାଙ୍କର ଦୁଇଜଣ ପରିଚାରକ । ସେ ମହାୟଶ ନିଜ ଛାତିରେ ଆଙ୍ଗୁଳି ଟିପମାରି କେଇଥର କହିଲେ 'ମାଣ୍ଡା' । ତା'ପରେ ଆମ ପ୍ରତ୍ୟେକ ଆଡ଼େ ଆଙ୍ଗୁଳି ଦେଖାଇ ଇସାରା ଦ୍ୱାରା ଆମର ନାମ ଜାଣିବାକୁ ଚାହିଲେ ।

* କୋନାନ୍‌ଡୟେଲ୍ ଯେତେବେଳେ ଏ ଗଳ୍ପ ଲେଖନ୍ତି ସେତେବେଳେ ଟିଉବ୍‌ଲାଇଟ୍‌ର କଳ୍ପନାଜଳ୍ପନା ଚାଲିଥାଏ ମାତ୍ର । – ଅନୁବାଦକ ।

ମାରାକଟ୍, ହେଡ୍‌ଲେ ଓ ସ୍କାନ୍‌ଲନ୍ ଏହି କେତୋଟି ନାମ ନିର୍ଭୁଲ ଭାବରେ ଉଚ୍ଚାରଣ କରିବା ପର୍ଯ୍ୟନ୍ତ ସେ ବାରମ୍ବାର ଉଚ୍ଚାରଣ କଲେ । ତା'ପରେ ଆମକୁ ବସିବାର ଇଙ୍ଗିତ କରି ପରିଚାରକକୁ କ'ଣ କହିଲେ । ସେଠାରୁ ଚାଲିଯାଇ ସେ ଟିକିଏ ପରେ ଧଳା ବାଳ ଓ ଦାଢ଼ିର ଖୁବ୍ ବୁଢ଼ା ଜଣେ ଲୋକକୁ ସାଙ୍ଗରେ ନେଇ ଫେରିଲେ । ସେ ବୃଦ୍ଧଙ୍କ ମୁଣ୍ଡରେ କଳା ରଙ୍ଗର ଗୋଟାଏ ଟୋପି, ତା'ର ଉପରିଭାଗ କ୍ରମଶଃ ସରୁ । କହିବାକୁ ଭୁଲିଯାଇଛି, ସମସ୍ତେ ପିନ୍ଧିଛନ୍ତି ଆଣ୍ଠୁ ପର୍ଯ୍ୟନ୍ତ ଝୁଲା ରଙ୍ଗନ୍ ପୋଷାକ ଓ ପାଦରେ ମାଛ ଚମଡ଼ାର କିମ୍ବା ଅନ୍ୟ କୌଣସି ରକମର କଷା ହୋଇନଥିବା ଚମଡ଼ାର ଉଞ୍ଚା ବୁଟ୍ । ଜଣାପଡ଼ିଲା, ବୃଦ୍ଧ ଜଣକ ଡାକ୍ତର, କାରଣ ସେ ଆମର ଶାରୀରିକ ଅବସ୍ଥା ପରୀକ୍ଷା କରି ଦେଖିଲେ । ତାଙ୍କ ପରୀକ୍ଷା ପ୍ରଣାଳୀ ଅତି ସହଜ । କେବଳ ପ୍ରତ୍ୟେକଙ୍କ କପାଳରେ ହାତ ଦେଇ ଆଖି ବୁଜି ଆମ ଶରୀର ଭିତରର ଅବସ୍ଥାର ଛାପା ମନ ମଧ୍ୟରେ ସେ ଆଙ୍କି ଦେଉଥିଲେ । ମନେହେଲା ପରୀକ୍ଷା ଫଳରେ ସେ ଖୁସୀ ହେଲେ ନାହିଁ, କାରଣ ସେ ଧୀରେ ଧୀରେ ମୁଣ୍ଡ ହଲାଇଲେ ଓ ଗୁରୁଗମ୍ଭୀର ଭାବରେ ମାଣ୍ଡାଙ୍କ୍ ଦି' ଚାରୋଟି କଥା କହିଲେ । ଏଥର ସେ ଟ୍ରେ'ରେ ଖାଦ୍ୟ ଓ ବୋତଲେ ବ୍ରାଣ୍ଡି ଆଣିଲେ । ଆମେ ଏତେ କ୍ଳାନ୍ତ ହୋଇଥିଲୁ ଯେ ସେ ସବୁ କ'ଣ ନଦେଖି ଖାଇଲାଗିଲୁ । ଖାଇବାପରେ ଶରୀର ସତେଜ ହେଲା । ତା'ପରେ ଆମକୁ ଆଉ ଗୋଟିଏ ବଖରାକୁ ନିଆଗଲା । ସେଠାରେ ତିନୋଟି ବିଛଣା ବିଛା ହୋଇଚ । ସେଥିରୁ ଗୋଟାକରେ ମୁଁ ଦେହ ଲମ୍ବାଇଦେଲି । ଅସ୍ପଷ୍ଟ ଭାବରେ ମନେପଡ଼େ ବିଲ୍ ସ୍କାନ୍‌ଲନ୍ ଆସି ପାଖରେ ବସିଲା ।

ସେ କହିଲା, 'ଏଇ ଧର ସାଙ୍ଗ କେଇ ଢୋକ ବ୍ରାଣ୍ଡି ଦୌଲତରୁ ଜୀବନଟା ରହିଲା । କିନ୍ତୁ ଆମେ ଆସିଲୁ କେଉଁଠିକି କୁହତ ?'

'ତୁମେ ଯାହା ଜାଣ ମୁଁ ତାଠୁ ବେଶି ଜାଣେନା ।'

ନିଜ ବିଛଣାରେ ଶୋଉ ଶୋଉ ନିଦ୍ରାଜଡ଼ିତ ସ୍ୱରରେ ବିଲ୍ କହିଲା, 'ଏଥର ମୁଁ ଲମ୍ବା ହେଲି ।'

ଏହା ପରେ ଆଉ କିଛି ମନେନାହିଁ । ଏପରି ଅଚେତ ନିଦ୍ରାରେ ଆଉ କେବେ ଶୋଇଚ ବୋଲି ମୋର ମନେପଡ଼େନା ।

## ପାଞ୍ଚ

ଯେତେବେଳେ ଜ୍ଞାନ ହେଲା, ବୁଝିପାରିଲିନାହିଁ କେଉଁଠି ଅଛି । କ୍ରମଶଃ ଆଗଦିନର ଘଟନା ସବୁ ଗୋଟାଏ ଅସ୍ପଷ୍ଟ ଦୁଃସ୍ୱପ୍ନ ଭଳି ମନେପଡ଼ିବାକୁ ଲାଗିଲା । ସେ ସବୁ ଯେ ସତ୍ୟ ତା' ଭାବିପାରୁନଥିଲି । ବୋକାଙ୍କ ଭଳି ଖାଲି ବଖରାଟିକୁ ଦେଖୁଥିଲି । ବଖରାଟିରେ କୌଣସି ଝରକା ନାହିଁ । କାନ୍ଥଗୁଡ଼ିକ ମାଟିଆ ରଙ୍ଗର । କାର୍ନିସମାନଙ୍କ ଉପରେ ହାଲୁକା

ବାଇଗଣି ରଙ୍ଗର ଆଲୁଅ ଥରୁଥିଲା–ପ୍ରତିପ୍ରଭ ଆଲୁଅ । ବଖରାରେ ଆସବାବପତ୍ର ଅଛି କେତୋଟି । ଶେଷରେ ଆଖି ପଡ଼ିଲା ଦୁଇଟି ବିଛଣା ଉପରେ । ତା' ଭିତରୁ ଗୋଟିକରୁ ନାସିକାଗର୍ଜନ ଶୁଣିବାକୁ ପାଇଲି । 'ଷ୍ଟ୍ରାଟ୍‌ଫୋର୍ଡ଼'ରେ ଥିବାବେଳେ ଏ ଗର୍ଜନଟା ମାରାକଟ୍‌ଙ୍କର ବୋଲି ଜାଣିଥିଲି । ମନେହେଲା, କି ଅଜବ ବ୍ୟାପାର–ଏ କେବେ ସତ୍ୟ ହୋଇ ପାରେ ? କିନ୍ତୁ ଯେତେବେଳେ ମୋ ବିଛଣାର ଚାଦରରେ ହାତଦେଇ ଦେଖିଲି ଯେ ତାହା କୌଣସି ଅଜଣା ମାଛର କାଚିରେ ତିଆରି ସେତେବେଳେ ହୃଦୟଙ୍ଗମ କଲି କି ଅସମ୍ଭବ ଅଭାବନୀୟ ଅଭିଯାନ ଆମ କପାଳକୁ ଜୁଟିଗଲା । ଆଶ୍ଚର୍ଯ୍ୟ ହୋଇ ଏଇସବୁ ଭାବୁଚି ଏହିପରି ସମୟରେ ହୋ ହୋ ଶୁଣି ଚମକି ଚାହିଁ ଦେଖିଲି ବିଲ୍ ତା' ବିଛଣାରେ ଉଠି ବସିଚି । ମୁଁ ଉଠିବାର ଦେଖି ସେ ହସୁ ହସୁ କହିଲା–'ମର୍ନିଂ ଦୋସ୍ତ ।'

ମୁଁ ଟିକିଏ ଚିଡ଼ିଯାଇ କହିଲି, 'ବେଶ୍ ଖୁସ୍ ମିଜାଜରେ ଅଛ ମନେହୁଏ । କିନ୍ତୁ ହସିବା ଭଳି କ'ଣ ପାଇଲ ?'

ବିଲ୍ କହିଲା, 'ଆରେ, ଯେତେବେଳେ ନିଦ ଭାଙ୍ଗିଲା ମୋ ମିଜାଜଟା ବି ତମ ଭଳି ଚିଡ଼ା ଥିଲା, କିନ୍ତୁ ତା'ପରେ ମଗଜକୁ ଏମିତି ଗୋଟାଏ ବଢ଼ିଆ ମତଲବ ଆସିଲା ଯେ ବେଦମ୍ ହସ ମାଡ଼ିଲା ।'

'ହସିବା ମୁଁ ବି ଜାଣେ, କିନ୍ତୁ ମତଲବ୍‌ଟା କ'ଣ ଶୁଣେ ?'

'ଆରେ ଦୋସ୍ତ, ମୋ ମନକୁ ଆସିଲା, ଆମେ ଯଦି ସେଇ ଓଳମ ତାର ସହିତ ନିଜକୁ ବାନ୍ଧିଦେଇଥାନ୍ତେ ତା'ହେଲେ କେଡ଼େ ମଜା ହୋଇନଥାନ୍ତା ? ସେଇ କାଚ ମୁଖାମାନଙ୍କ ଭିତରେ ଆମର ନିଃଶ୍ୱାସ ନେବା ଠିକ୍ ଚାଲନ୍ତା । ତା'ପରେ ଯେତେବେଳେ ହାଓୟିବୁଢ଼ା ତା' ଜାହାଜରୁ ନଇଁପଡ଼ି ଦେଖୁଥାନ୍ତା, ଆଉ ଆମେ ତିନିହେଁ ତା' ଆଗରେ ପାଣିରୁ ଉଠିଯାନ୍ତୁ– ସେ ନିଶ୍ଚୟ ଭାବନ୍ତା ଆମକୁ ବନଶୀରେ ଗୁନ୍ଥିଚ । ଓଃ, କେଡ଼େ ମଜାଦାର !'

ଆମର ସମ୍ମିଳିତ ହସରେ ଡକ୍‌ଟରଙ୍କ ନିଦ ଭାଙ୍ଗିଲା । ସେ ଉଠିବସିଲେ । କିଛି କ୍ଷଣ ପୂର୍ବେ ମୁଁ ଯେମିତି ହତବାକ୍ ହୋଇଥିଲି ସେ ଯେ ବର୍ତ୍ତମାନ ସେମିତି ହୋଇଛନ୍ତି ତାହା ତାଙ୍କ ମୁହଁରୁ ଜଣାଗଲା । କିଛି ସମୟ ପରେ ସେ ପ୍ରକୃତିସ୍ଥ ହୋଇ ଆମର କର୍ତ୍ତବ୍ୟ ବର୍ତ୍ତମାନ କ'ଣ ସେଇ ଆଲୋଚନାକୁ ଫେରିଆସିଲେ । ସେ ନିଜ ଘଡ଼ିକୁ ଅନାଇଁ କହିଲେ, 'ବର୍ତ୍ତମାନ ନ' ଟା ।' ସମସ୍ତଙ୍କ ଘଡ଼ିରେ ମଧ୍ୟ ସେଇୟା, କିନ୍ତୁ ତାହା ସକାଳ ନ'ଟା କି ରାତି ନ'ଟା ଜାଣିବାର କୌଣସି ଉପାୟ ନଥିଲା । ଆମ ତାରିଖ ହିସାବ ଆମକୁହିଁ ରଖିବାକୁ ହେବ । ଆମେ ଓହ୍ଲାଇଲୁ ଅକ୍‌ଟୋବର୍ ତିନି ତାରିଖରେ । ଏଠାରେ ପହଞ୍ଚିଲୁ ସେଇଦିନ ସନ୍ଧ୍ୟାରେ । ଶୋଇଲୁ କେତେବେଳ ଯାଏ, ତା'ର ହିସାବ କିଏ ରଖିଚି ?

ସଭ୍ୟ ମଣିଷର ସମସ୍ତ ପ୍ରୟୋଜନୀୟ ଦ୍ରବ୍ୟ ଆମ ହାତପାଆନ୍ତି ଥିଲା । ଆମେ ପୋଷାକ ପିନ୍ଧି ମୁହଁ ହାତ ଧୋଇଲୁ । କବାଟଟା କିନ୍ତୁ ବାହାରୁ ବନ୍ଦଥିଲା । ବୁଝିଲୁ ସେ ସମୟତକ ପାଇଁ ଆମେ ବନ୍ଦୀ । ପବନ ଚଳାଚଳର ବ୍ୟବସ୍ଥା ଉପରେ ଆଖି ନପଡ଼ିଲେ ବି ବଖରା ଭିତରର ପବନ ତାଜା ଥିଲା । ଦେଖିଲି କାନ୍ଥ ଦେହରେ ସାନ ସାନ ଫୁକାର ରହିଛି, ସେ ବାଟେ ଝରି ଝରି ପବନ ଆସୁଛି । ମନେହେଲା କେଉଁଠି ସେଣ୍ଟ୍ରାଲ ହିଟିଂର ବ୍ୟବସ୍ଥା ମଧ ଅଛି, କାରଣ କୌଣସି ଚୁଲି ନ ଦେଖିଲେ ବି ବଖରାଟାରେ ବେଶ୍ ଆରାମଦାୟକ ଉତ୍ତାପ ଥିଲା । କାନ୍ଥରେ ଗୋଟାଏ ବଡ଼ ବୋତାମ ଥିବାର ଦେଖି ତାକୁ ଟିପିଲି । ସେଟା କଲିଂବେଲ ବୋଲି ଯାହା ଭାବିଥିଲି, ଦେଖିଲି ତାହା ଠିକ୍ । ଟିପିବା ମାତ୍ରକେ କବାଟଟା ଖୋଲିଗଲା ଓ ହଳଦିଆ ପୋଷାକ ପିନ୍ଧା ଗୋଟିଏ ଛୋଟ-କାଟିଆ ଚେହେରାର ମଣିଷ ଦୁଆର ପାଖରେ ଛିଡ଼ାହେଲା । ବଡ଼ ବଡ଼ ଚିଲା ଆଖିରେ ସେ ପଚାରିବା ଚାହାଁଣିରେ ଆମକୁ ଅନେଇଁଲା ।

ମାରାକଟ୍ କହିଲେ, 'ଆମକୁ ଭୋକ କରୁଛି, କିଛି ଖାଇବାକୁ ଦେବ ?' ଲୋକଟି ମୁଣ୍ଡ ହଲାଇ ହସିଲା ଓ ଠିଆରହିଲା । ବୁଝାଗଲା ଆମ ଭାଷା ତା' ପକ୍ଷରେ ଅବୋଧ । ମୁହଁରେ ଅଙ୍ଗୁଳି ପୂରାଇ ଖାଇବାର ଇଙ୍ଗିତ କରିବାରୁ ସେ ଜୋର୍‌ରେ ମୁଣ୍ଡ ଟୁଙ୍ଗାରି ବୁଝିପାରିଥିବା ଜଣାଇ ଚଞ୍ଚଳ ଚାଲିଗଲା । ଦଶମିନିଟ୍ ପରେ କବାଟ ପୁଣି ଖୋଲିଗଲା ଏବଂ ସେହିଭଳି ହଳଦିଆ ପୋଷାକ ପିନ୍ଧା ଦି' ଜଣ ପରଚାରକ ଗୋଟାଏ ସାନ ଟେବୁଲ ପେଲି ପେଲି ଆଣି ଘରେ ପ୍ରବେଶକଲେ । ଆଉ ଖାଦ୍ୟ ? ଖୁବ୍ ଭଲ ହୋଟେଲ୍‌ରେ ବି ଏହାଠୁ ବଢ଼ିଆ ଖାଦ୍ୟ ମିଳନ୍ତାନାହିଁ । କଫି, ଗରମ ଦୁଧ, ରୋଲ, ସୁସ୍ୱାଦୁ ମାଛ ଓ ମହୁ ସହ ବ୍ରେକ୍‌ଫାଷ୍ଟ ସମାଧା କରିବାକୁ ଅଧଘଣ୍ଟାଏ ପର୍ଯ୍ୟନ୍ତ ଆମେ ଅତ୍ୟନ୍ତ ବ୍ୟସ୍ତ ରହିଲୁ । ତା'ପରେ ପରିଚାରକ ଦୁଇଜଣ ପୁଣି ଆସି ଟେବୁଲଟିକୁ ପେଲି ନେଇଗଲେ ଓ ଯିବାବେଳେ କବାଟ ସାବଧାନତା ସହ ବନ୍ଦକରିଦେଲେ ।

ସ୍କାନ୍‌ଲନ କହିଲା, "ନିଜ ଦେହକୁ ଚିମୁଟି ଚମୁଟି ସିଜାଇଦେଲି, ତଥାପି ବୁଝିପାରୁନାହିଁ ଏସବୁ ସ୍ୱପ୍ନ ନା ସତ୍ୟ ! ଆଚ୍ଛା ଡକ୍‌ଟର, ଆପଣ ସମସ୍ତ ବ୍ୟାପାରଟା କ'ଣ ବୋଲି ଅନୁମାନ କରୁଛନ୍ତି ?'

ଡକ୍‌ଟର ମୁଣ୍ଡ ହଲାଇଲେ । କହିଲେ, 'ମୋତେ ବି ଲାଗୁଛି ଏସବୁ ସ୍ୱପ୍ନ, ହେଲେ ବଡ଼ ଗୌରବମୟ ସ୍ୱପ୍ନ ! ଜଗତକୁ ଏହା କି ଅପୂର୍ବ କାହାଣୀ– ଖାଲି ସମସ୍ତଙ୍କୁ ଶୁଣାଇହୁଅନ୍ତା କି ?'

ମୁଁ କହିଲି, 'ଗୋଟାଏ କଥା କିନ୍ତୁ ବୁଝାଗଲା ଯେ ଆଟଲାଣ୍ଟିସ୍‌ର କିମ୍ବଦନ୍ତୀରେ ସତ୍ୟ ନିଶ୍ଚୟ ଅଛି, ଆଉ ସେଠାର କେତେକ ଲୋକ ଅତି ଆଶ୍ଚର୍ଯ୍ୟ ଉପାୟରେ ନିଜକୁ ବଞ୍ଚାଇ ରଖିପାରିଚନ୍ତି ।'

ବିଲ୍ ତା'ର ସୁଗୋଲ ମୁଣ୍ଡଟି କୁଣ୍ଡାଉ କୁଣ୍ଡାଉ କହିଲା, 'ଯଦିବା ସେମାନେ ବଞ୍ଚି ରହିପାରିଲେ–ପବନ, ପିଇବା ପାଣି ଓ ଅନ୍ୟାନ୍ୟ ସବୁ ସେମାନେ ପାଇଲେ କିପରି ଏହା ମୋ ମୁଣ୍ଡକୁ ପଶୁ ନାହିଁ । କାଲି ରାତିର ସେ ଦାଢ଼ିଆ ଦୋସ୍ତଟି ଆମକୁ ପୁଣି ଥରେ ଦର୍ଶନ ଦେବାକୁ ଆସନ୍ତେ କି ତାଙ୍କ ପାଖରୁ କିଛି ଇଲମ୍ ମିଳିପାରନ୍ତା ପରା ।'

'ତା' କିପରି ସମ୍ଭବ, କାରଣ ଆମେ ପରସ୍ପରର କଥା ତ ବୁଝିପାରୁନାହୁଁ !'

ମାରାକଟ୍ କହିଲେ, 'ଆମେ ନିଜର ନିରୀକ୍ଷା ଶକ୍ତି ବ୍ୟବହାର କରିବା । ବର୍ତ୍ତମାନ ମୁଁ ଗୋଟାଏ କଥା ବୁଝିପାରୁଚି–ଆମେ ଯେଉଁ ମହୁ ଖାଇଲେ ସେଟା ପ୍ରକୃତ ମହୁ ନୁହଁ– ସାଂଶ୍ଳେଷିକ ମହୁ–ଅର୍ଥାତ୍ କୃତ୍ରିମ ମହୁ, ଯାହା ପୃଥିବୀରେ ଆମେ ବି ତିଆରି କରି ଶିଖିଚୁ । ଆଉ କୃତ୍ରିମ ମହୁ, ଯଦି ହୋଇପାରିଲା, ତେବେ କୃତ୍ରିମ କଫି ବା ମଇଦା ନ ହେବ କାହିଁକି ? ମୌଳିକ ପଦାର୍ଥମାନଙ୍କର ପ୍ରତ୍ୟେକଟି ପରମାଣୁ ଗୋଟିଏ ଗୋଟିଏ ଇଟା । ଚତୁର୍ଦ୍ଦିଗରେ ଏହି ଇଟା ସବୁ ପଡ଼ିରହିଛି । ଆମର କେବଳ ଏତିକି କହିଲେ ହେଲା, କି ଉପାୟରେ କେଉଁ ଜାତିର କେତେ ଇଟା ଦରକାର ଯେଉଁଥିରେ ନୂଆ ନୂଆ ପଦାର୍ଥର କୋଠାଘର ଗଢ଼ା ହୋଇ ପାରିବ । ଏଇ ପରମାଣୁ ସଜାଇବାର ଅଦଳ-ବଦଳରେ ଶ୍ୱେତସାର ପରିଣତ ହୁଏ ଚିନିରେ କିମ୍ୱା ଆଲକୋହଲ୍‌ରେ । କିନ୍ତୁ ଏହି ଅଦଳ-ବଦଳ ହୁଏ କେଉଁଥିରେ ? ଉତ୍ତାପରେ ! ବିଦ୍ୟୁତରେ ! ଏହାଛଡ଼ା ଅନ୍ୟ କୌଣସି କୌଣସି ଶକ୍ତିରେ ବି, ଯାହା ବିଷୟରେ ଆମେ ହୁଏତ କିଛି ଜାଣୁନା । ଏପରି କେତେଗୁଡ଼ିଏ ପଦାର୍ଥ ଅଛି ଯା'ର ପରମାଣୁଗୁଡ଼ିକ ନିଜେ ନିଜେ ଅଦଳ-ବଦଳ ହୋଇଯାଉଥାଏ ! ଇଉରେନିୟମ୍ ହୋଇଥାଏ ରେଡ଼ିୟମ୍, ପୁଣି ରେଡ଼ିୟମ୍ ହୋଇଯାଏ ସୀସା–ଆମର ହାତ ଲଗାଇବା ବି ଦରକାର ହୁଏନାହିଁ ।'

ମୁଁ କହିଲି, 'ଆପଣ ତା'ହେଲେ ମନେକରନ୍ତି ଏମାନଙ୍କ ରସାୟନ ବିଦ୍ୟା ଖୁବ୍ ଉନ୍ନତଧରଣର ?'

'ସେ ବିଷୟରେ ମୁଁ ନିଶ୍ଚିତ । ମୌଳିକ ପରମାଣୁମାନଙ୍କ ମଧ୍ୟରୁ ଏପରି ଗୋଟିଏ ବି ନାହିଁ ଯାହା ସେମାନଙ୍କୁ ଅପ୍ରାପ୍ୟ । ଉଦ୍‌ଜାନ ଓ ଅମ୍ଳଜାନ ଆସିଲା ସମୁଦ୍ର ପାଣିରୁ । ନାଇଟ୍ରୋଜେନ୍ ଓ ଅଙ୍ଗାର ଅଛି ଏହି ଅପର୍ଯ୍ୟାପ୍ତ ଗଛବୃକ୍ଷମାନଙ୍କରେ । ଆଉ ସାମୁଦ୍ରିକ ଜୀବଦେହ ଧ୍ୱଂସ ହୋଇ ଏହି ଯେଉଁ ସିନ୍ଧୁମଳ ହୋଇଚି ଏଥିରେ ଅଛି ଫସ୍‌ଫରସ୍ ଓ କ୍ୟାଲ୍‌ସିୟମ୍ । ଯଥେଷ୍ଟ ଜ୍ଞାନ ଓ କୌଶଳ ଥିଲେ କ'ଣ ବା ପ୍ରସ୍ତୁତ ହୋଇନପାରିବ ?'

ଡକ୍‌ଟର ରସାୟନ ଶାସ୍ତ୍ର ଉପରେ ଗୋଟାଏ ବକ୍ତୃତା ଆରମ୍ଭ କରିବା ସମୟରେ କବାଟ ଖୋଲିଗଲା । ମାଣ୍ଡା ପ୍ରବେଶକରି ଆମକୁ ସହୃଦୟ ସମ୍ଭାଷଣ ଜଣାଇଲେ । ତାଙ୍କ ସହିତ ଗତ ରାତ୍ରିର ସେହି ପକ୍ୱକେଶ ବୃଦ୍ଧ ବି ଆସିଥିଲେ । ବିଦ୍ୱାନ୍ ବୋଲି ହୁଏତ ତାଙ୍କର ଖ୍ୟାତିଥିଲା । ସେ କେତେଥର ଆମକୁ ଉଦ୍ଦେଶ୍ୟ କରି କଥା କହିଲେ– ହୁଏତ ପ୍ରତ୍ୟେକଥର

ଭିନ୍ନଭିନ୍ନ ଭାଷାରେ, କିନ୍ତୁ ଆମ ପକ୍ଷରେ ସବୁ ସମାନ ଅବୋଧ । ତହୁଁ ସେ ହତାଶ ଭାବରେ ମାଣ୍ଡାକୁ କ'ଣ କହିଲେ । ସେହି ପରିଚାଳକ ଦି'ଜଣ ସେ ପର୍ଯ୍ୟନ୍ତ ଦୁଆର ପାଖରେ ଅପେକ୍ଷା କରୁଥିଲେ । ମାଣ୍ଡା ତାଙ୍କୁ ଏକ ଆଦେଶ ଦେଲେ । ସେମାନେ ଚାଲିଯାଇ କେଉଁଠୁ ଗୋଟାଏ ଅଦ୍ଭୁତ ପର୍ଦା ଆଣି ହାଜର କଲେ । ଦୁଇ ପଟେ ଦୁଇଟି ଖୁଣ୍ଟିରେ ସେଟା ଟଣା ହୋଇଛି, ବାଇସ୍କୋପ ପର୍ଦା ପରି । କିନ୍ତୁ ତା' ଦେହରେ ଗୋଟାଏ ଚକଚକିଆ ଜିନିଷର ଆସ୍ତରଣ । ଆଲୁଅ ପଡ଼ି ସେଟା ଚକ୍‌ମକ୍ କଲା । ଗୋଟାଏପଟ କାନ୍ଥକୁ ଲଗାଇ ସେଟାକୁ ରଖାହେଲା । ବୃଦ୍ଧ ଭଦ୍ରଲୋକ ସାବଧାନତା ସହିତ ସେଇ ପର୍ଦାଠାରୁ କେତେଟି ପାଦ ମାପି ଚଟାଣ ଉପରେ ଗୋଟିଏ ଚିହ୍ନ ଦେଲେ । ସେଇଠି ଛିଡ଼ାହୋଇ ସେ ମାରାକାଟ୍‌ଙ୍କ ଆଡ଼େ ମୁହଁକରି ହାତ ଦ୍ୱାରା ନିଜର କପାଳ ଛୁଇଁଲେ ଓ ସଙ୍ଗେ ସଙ୍ଗେ ପର୍ଦାଆଡ଼େ ଆଙ୍ଗୁଳି ଦେଖାଇଲେ ।

ସ୍କାନ୍‌ଲନ୍ କହିଲା, 'ବିଲ୍‌କୁଲ୍ ଫାଙ୍କ୍—ଗୋଲକଧନ୍ଦା ।'

ମାରାକଟ୍ ମୁଣ୍ଡ ହଲାଇ ଜଣାଇଲେ ଯେ ଆମେ ଟିକିଏ ବି କିଛି ବୁଝିପାରୁନାହୁଁ । ବୃଦ୍ଧ ମୁହୂର୍ତ୍ତକ ପାଇଁ ଘାବଡ଼ି ଯାଇ ସାଙ୍ଗେ ସାଙ୍ଗେ ଆଉ ଏକ ବୁଦ୍ଧି ବାହାରକଲେ । ଏଥର ସେ ନିଜ ଦେହ ଆଡ଼େ ଅଙ୍ଗୁଳି ଦେଖାଇଲେ ଓ ତା'ପରେ ପର୍ଦା ଆଡ଼କୁ ମୁହଁ କରି ସ୍ଥିର ଦୃଷ୍ଟିରେ ଅନାଇଁ ରହିଲେ । ମନେହେଲା ସେହି ପର୍ଦା ଉପରେ ସେ ମନ ସଂଯୋଗ କରୁଛନ୍ତି । ନିମକ୍ଷକ ମଧ୍ୟରେ ତାଙ୍କ ପ୍ରତିବିମ୍ବ ପର୍ଦାଉପରେ ପଡ଼ିଲା । ତା'ପରେ ସେ ଆମ ଆଡ଼କୁ ଦେଖାଇଲେ ଏବଂ ପରମୁହୂର୍ତ୍ତରେ ଆମ ତିନିଜଣଙ୍କ ଛବି ପର୍ଦା ଉପରେ ଭାସିଉଠିଲା—ଠିକ୍ ଆମର ନୁହେଁ—ତାଙ୍କ ଆଖିରେ ଆମେ ଦେଖିବାକୁ ଯେମିତି । ସ୍କ୍ୟାନ୍‌ଲନ୍ ଦିଶୁଥିଲା ଅନେକଟା ଚୀନାଙ୍କ ଭଳି, ଆଉ ମାରାକଟ୍ ଶୁଷ୍କ ଶବ ଭଳି, କିନ୍ତୁ ଚିହ୍ନାଯାଉଥିଲା ଠିକ୍ ।

ମୁଁ କହିଲି, 'ଏ ଚିନ୍ତାର ପ୍ରତିଛବି !'

ମାରାକଟ୍ କହିଲେ, 'ଠିକ୍—ଅତୀବ ଆଶ୍ଚର୍ଯ୍ୟ ଆବିଷ୍କାର । ବ୍ୟାପାରଟି ଟେଲିପ୍ୟାଥି ଓ ଟେଲିଭିଜନ୍ ଏ ଦୁଇଟିର ସଂମିଶ୍ରଣରେ ତିଆରି । ପୃଥିବୀରେ ଏ ଦୁଇଟି ଜିନିଷ ବିଷୟରେ ଆମର ଧାରଣା ସାମାନ୍ୟ ।'

ସ୍କାନ୍‌ଲନ୍ କହିଲା, 'ମୁଁ କଦାପି ଭାବିନି ଏ ଜନ୍ମରେ ନିଜକୁ କେବେ ବାଇସ୍କୋପ୍‌ର ପର୍ଦାରେ ଦେଖିବ—ଅବଶ୍ୟ ଯଦି ସେଇ ପୁଚୁକାଗାଲିଆ ଚୀନାଲୋକଟି ମୁଁ ହୋଇଥାଏ !'

ଏହି ସମୟରେ ଦେଖାଗଲା ବୃଦ୍ଧ କ'ଣ ଇଙ୍ଗିତ କରୁଛନ୍ତି । ସ୍କ୍ୟାନ୍‌ଲନ୍ କହିଲେ, 'ବୃଦ୍ଧ ଚାହାନ୍ତି ଆପଣ ସେଟା ଥରେ ପରଖି ଦେଖନ୍ତେ ।'

ମାରାକଟ୍ ତେଣୁ ଚିହ୍ନିତ ସ୍ଥାନକୁ ଯାଇ ଛିଡ଼ାହେଲେ । ସେଇ ବୃଦ୍ଧର ନିଖୁଣ ଛବିକୁ ମାରାକଟ୍‌ଙ୍କ ସବଳ ସୁସ୍ଥ ମସ୍ତିଷ୍କ ପର୍ଦାରେ ପ୍ରତିଫଳିତ କଲା । ମାଣ୍ଡାଙ୍କ ଛବି

ବି ଦେଖିଲୁ । ତା'ପରେ ଦେଖିଲୁ 'ଷ୍ଟ୍ରାଟ୍‌ଫୋର୍ଡ଼'କୁ । ମାଣ୍ଡା ଓ ସେଇ ପ୍ରାଚୀନ ବିଜ୍ଞାନୀ ଦି' ଜଣ ଜାହାଜର ପ୍ରତିଛବି ଦେଖି ଖୁବ୍ ମୁଣ୍ଡହଲାଇଲେ । ସେମାନଙ୍କ ଭାବରୁ ଜଣାଗଲା ସେମାନେ କହୁଛନ୍ତି– ହଁ ହଁ, ଠିକ୍ ଏହିପରି ତ ! ମାଣ୍ଡା ମୁଣ୍ଡ ହଲାଇ ଆମ ଆଡ଼କୁ ଓ ପର୍ଦାକୁ ଆଉଥରେ ଅଙ୍ଗୁଳି ଦେଖାଇଲେ ।

ମୁଁ କହିଲି, 'ତାଙ୍କ ଉଦ୍ଦେଶ୍ୟ ହେଲା–ଆମେ ସବୁକଥା ଖୋଲି କହିବା । ସେମାନେ ଛବିଦ୍ୱାରା ଜାଣିବାକୁ ଚାହାନ୍ତି ଆମେ କିଏ ଏବଂ କିପରି ଏଠାକୁ ଆସିଲେ ।'

ମାରାକଟ୍ ମୁଣ୍ଡ ହଲାଇ ମାଣ୍ଡାକୁ ଜଣାଇଲେ ଯେ ସେ ବୁଝିପାରିଛନ୍ତି । ତା'ପରେ ସେ ଆମର ସାଗର ଅଭିଯାନ କଥା କହିବା ମାତ୍ରକେ ମାଣ୍ଡା ହାତ ଉଠାଇ ତାଙ୍କୁ ବନ୍ଦ କରିଦେଲେ । ତାଙ୍କ ଆଦେଶରେ ପରିଚାରକମାନେ ପର୍ଦାଟିକୁ ସେଠାରୁ ନେଇଗଲେ । ସେ ଦି' ଜଣ ତାଙ୍କୁ ଅନୁଗମନ କରିବାକୁ ଇଙ୍ଗିତ ଦ୍ୱାରା ଆମକୁ କହିଲେ ।

କୋଠାଟି ବିଶାଳ । ଆମେ ବାରଣ୍ଡା ପରେ ବାରଣ୍ଡା ପାର ହୋଇ ଗଲୁ । ଶେଷରେ ଗୋଟାଏ ପ୍ରକାଣ୍ଡ ହଲ୍‌ରେ ପହଞ୍ଚିଲୁ । ହଲ୍‌ର ଚୌକି ସବୁ ରଙ୍ଗାଳୟ ପରି ଧାଡ଼ି ପରେ ଧାଡ଼ି କ୍ରମଶଃ ଉଚ୍ଚଭାବରେ ସଜା ହୋଇଛି । ଗୋଟାଏ ମୁଣ୍ଡରେ ଗୋଟାଏ ପର୍ଦା ଟଙ୍ଗା ହୋଇଛି–ଆମେ ଯେମିତି ପର୍ଦା ଅଳ୍ପସମୟ ପୂର୍ବରୁ ଦେଖିଥିଲୁ ସେମିତି । ତା' ଆଡ଼କୁ ମୁହଁ କରି ବସିଛନ୍ତି ଅନ୍ତତଃ ହଜାରେ ଦର୍ଶକ । ଆମେ ପ୍ରବେଶ କରିବା ମାତ୍ରକେ ସେମାନଙ୍କ ଭିତରୁ ସ୍ୱାଗତ ଗୁଞ୍ଜନରୋଳ ଉଠିଲା । ସେମାନଙ୍କ ମଧ୍ୟରେ ପୁରୁଷ ଓ ନାରୀ ଉଭୟ ଥିଲେ–ସବୁ ବୟସର । ପୁରୁଷମାନେ ଇଉରୋପୀୟଙ୍କଠାରୁ ଟିକିଏ କମ୍ ଗୋରା, ସମସ୍ତଙ୍କର ଦାଢ଼ି ଅଛି । ନାରୀମାନେ ସୁନ୍ଦରୀ । ଟିକିଏ ବୟସ୍କା ନାରୀମାନଙ୍କ ଚେହେରା ଗମ୍ଭୀର । ତେବେ ସମସ୍ତଙ୍କୁ ଭଲକରି ଦେଖିବାର ସମୟ ପାଇଲି ନାହିଁ, କାରଣ ଆମକୁ ନେଇ ସବା ସାମନା ଧାଡ଼ିରେ ବସାଇ ଦିଆଗଲା । ମାରାକଟ୍‌ଙ୍କୁ ସେମାନେ ନେଇଗଲେ ପର୍ଦା ସାମନାରେ ଥିବା ମଞ୍ଚ ଉପରକୁ । ଆଲୁଅ ସବୁ ଲିଭାଇ ଦିଆଗଲା । ତା'ପରେ ମାରାକଟ୍‌ଙ୍କୁ ଇସାରା ଦିଆଗଲା ଆରମ୍ଭ କରିବାକୁ ।

ସେ ବି ତାଙ୍କ କାର୍ଯ୍ୟ ଖୁବ୍ ଭଲଭାବରେ କଲେ । ପ୍ରଥମେ ଦୃଶ୍ୟ ହେଲା ଆମ ଜାହାଜ ଟେମ୍ସ୍ ନଦୀ ଛାଡ଼ୁଛି । ଦର୍ଶକମାନଙ୍କ ମଧ୍ୟରେ ଗୋଟାଏ ଉତ୍ତେଜନାର କଳରୋଳ ଉଠିଲା– ପ୍ରକୃତ ଆଧୁନିକ ସହରର ଏମିତି ତାଜା ନମୁନା ଦେଖି । ତା'ପରେ ଦେଖାଗଲା ଗୋଟାଏ ମାନଚିତ୍ର । ଜାହାଜଟା କେଉଁ ବାଟରେ ଯାତ୍ରା କଲା ପ୍ରଦର୍ଶିତ ହେଲା । ତା'ପରେ ସେଇ ଇସ୍ପାତର ଗୋଲକଟି ଓ ତା'ର ସାଜ ସରଞ୍ଜାମ । ତାହା ଦେଖି ଦର୍ଶକମାନଙ୍କ ମଧ୍ୟରେ ଯେଉଁ ଗୁଞ୍ଜନ ଉଠିଲା ସେଥିରୁ ଜଣାଗଲା ସେମାନେ ତାକୁ ଚିହ୍ନିପାରିଛନ୍ତି । ତା'ପରେ ଦେଖିଲୁ ଆମେ ସମୁଦ୍ର ଗର୍ଭ ମଧ୍ୟକୁ ଓହ୍ଲାଉଛୁ । ଓହ୍ଲାଇ ଆମେ ଶୈଳଶିରା ଉପରେ ସେହି ଅତଳ ଗହ୍ୱରର ମୁହଁ ନିକଟରେ ପହଞ୍ଚିଲୁ । ତା'ପରେ ସେଇ ଦାନବୀୟ

ଜନ୍ତୁଟାର ଆବିର୍ଭାବ । ଦର୍ଶକମାନେ ପାଟି କରି ଉଠିଲେ 'ମ୍ୟାରାକସ୍ ! ମ୍ୟାରାକସ୍ !' ବୁଝିଲି ସେମାନେ ମଧ୍ୟ ସେ ଜନ୍ତୁଟାକୁ ଚିହ୍ନନ୍ତି ଓ ଭୟକରନ୍ତି । ସମସ୍ତେ ରୁଦ୍ଧ ଶ୍ୱାସରେ ଦେଖିବାକୁ ଲାଗିଲେ ସେଟା ଆମ ଗୋଲକର ଦଉଡ଼ିଟାକୁ ଟଣାଟଣି କରୁଚି । ଶେଷରେ ଯେତେବେଳେ ତାହା କଟିଗଲା ଓ ଆମେ ସେହି ଗଭୀର ଖାତ ମଧ୍ୟରେ ପଡ଼ିଗଲୁ ସେତେବେଳେ ସଭା ମଧ୍ୟରୁ ଗୋଟାଏ ଅସ୍ଫୁଟ ଆର୍ତ୍ତନାଦ ଉଠିଲା ।

ସଭା ଭାଙ୍ଗିବା ପରେ ସମସ୍ତେ ଆସି ଆମ ପିଠି ଆପୁଡ଼ାଇ ଓ ନାନା ଭାବଭଙ୍ଗୀ ଦ୍ୱାରା ବୁଝାଇଦେଲେ ସେମାନେ ଆମକୁ ତାଙ୍କ ଦେଶକୁ ସ୍ୱାଗତ କରୁଛନ୍ତି । ପ୍ରଧାନବ୍ୟକ୍ତିମାନଙ୍କ ମଧ୍ୟରୁ କେତେକଙ୍କ ସହିତ ଆମର ଆଳାପ କରାଇ ଦିଆହେଲା । ସମସ୍ତେ ପିନ୍ଧିଛନ୍ତି ଆଣ୍ଠୁଯାଏ ଓହଳିଥିବା ଜାଫ୍‌ରାନ୍ ରଙ୍ଗର ଚୋଗା, ଅଣ୍ଟାରେ କମରବନ୍ଦ୍ ଓ ପାଦରେ ଉଚ୍ଚା ବୁଟ୍- ମାଛକାତି ଭଳିଆ କୌଣସି କାତିଥିବା ଚମଡ଼ାରେ ତିଆରି । ନାରୀମାନଙ୍କ ଦେହରେ ପ୍ରାଚୀନ ଢଙ୍ଗର ସୁନ୍ଦର ପୋଷାକ । ଗୋଲାପୀ, ନୀଳ ଓ ସବୁଜ ରଙ୍ଗର ନାନା ବିଭିନ୍ନ ଆଭାର ସମାବେଶ । ସେଥିରେ ପୁଣି ପେଣ୍ଟା ପେଣ୍ଟା ମୁକ୍ତା ଓ ସପ୍ତବର୍ଣ୍ଣୀ ଶାମୁକାର ଚୁମକି ବସାହୋଇଛି । ପ୍ରଧାନମାନଙ୍କ ମଧ୍ୟରୁ ଜଣକର ନାମ ମାର୍ପା । ତାଙ୍କର ଏକମାତ୍ର କନ୍ୟା ମୋଜାକୁ ସେଦିନ ଦେଖିଲି । ତାହାର ଚାହାଣରେ ଏପରି ଏକ ଆଶ୍ଚର୍ଯ୍ୟ ଗଭୀରତା ଥିଲା ଯାହା ମୋ ଜୀବନରେ ସେହିଦିନଠାରୁ ଏକ ନୂତନ ସ୍ୱାଦ ଆଣିଦେଲା ।

ଡାଃ ମାରାକଟ୍ ମହା ଉତ୍ସାହରେ ଜଣେ ଭଦ୍ରମହିଳାଙ୍କୁ ଇସାରା ଇଙ୍ଗିତ ଦ୍ୱାରା ଭାଷାର ବ୍ୟବଧାନ ଦୂର କରୁଥିବାର ଦେଖିଲି । ସ୍କାନ୍‌ଲନ୍ ଦଳେ ଯୁବତୀଙ୍କ ଗହଣରେ ଛିଡ଼ାହୋଇ ହାତଗୋଡ଼ ଛାଟି ବୁଝାଇବାର ଚେଷ୍ଟା କରୁଚ ଯେ ସେମାନଙ୍କ ଭଳି ସୁନ୍ଦରୀ ପୃଥିବୀରେ ନାହାନ୍ତି । ଯୁବତୀମାନେ ବୁଝନ୍ତୁ ବା ନବୁଝନ୍ତୁ ହସି ହସି ଲୋଟିଯାଉଥାନ୍ତି ।

ସେଦିନ ମାଣ୍ଡା ଓ ଆମର ନୂତନ ବନ୍ଧୁମାନେ ଆମକୁ ସେହି ବିଶାଳ ପ୍ରାସାଦର କେତେକାଂଶ ବୁଲାଇ ଦେଖାଇଲେ । ବହୁଯୁଗ ଧରି ଉପରୁ ସାମୁଦ୍ରିକ ଜୀବମାନଙ୍କର ହାଡ଼ ଖୋଳ ଇତ୍ୟାଦି ନାନା ଜିନିଷ ପଡ଼ି ପଡ଼ି ଘରଟିର ଏତେ ଅଂଶ ପୋତି ହୋଇ ପଡ଼ିଚି ଯେ ଛାତ ବାଟେ ଯିବା ଛଡ଼ା ଅନ୍ୟ ବାଟ ନାହିଁ । ଛାତ ଉପରେ ପ୍ରାସାଦ ଭିତରକୁ ପ୍ରବେଶ କରିବା ବଖରା । ସେଠାରୁ ବାଟ କ୍ରମାଗତ ତଳ ଆଡ଼କୁ ଓହ୍ଲାଇ ଯାଇଚି । କେଇଶହଫୁଟ ଓହ୍ଲାଇବା ପରେ ଚଟାଣ । ପୁଣି ଚଟାଣ ଖୋଳି ସୁଡ଼ଙ୍ଗ କରି ମଧ୍ୟ ରାସ୍ତା ତିଆରି ହୋଇଚ । ଯେଉଁଆଡ଼କୁ ଅନାଉଁ ଦେଖୁ ଢାଲୁ ରାସ୍ତା ଓହ୍ଲାଇଯାଇଛି ପୃଥିବୀର ପେଟ ଭିତରକୁ । ପବନତିଆରି ଯନ୍ତ୍ର ଏବଂ ଚାରିଆଡ଼କୁ ତାହା ପଠାଇବାର ଯନ୍ତ୍ର ଦେଖିଲୁ । ମାରାକଟ୍ ସବୁ ଜିନିଷର ବହୁ ପ୍ରଶଂସା କରୁ କରୁ

ଆମକୁ ଦେଖାଇଦେଲେ ଯେ ପବନ ତିଆରି କରିବା ପାଇଁ କେବଳ ଯେ ଅମ୍ଳଜାନ ଓ ଯବକ୍ଷାରଜାନ ମିଶା ହୋଇଚି ତା' ନୁହଁ, ଅନ୍ୟ ଯେଉଁସବୁ ଗ୍ୟାସ୍ ଖୁବ୍ ଅଳ୍ପ ପରିମାଣରେ ପୃଥିବୀର ବାୟୁରେ ଥାଏ–ଯେମିତି ଆରଗନ୍, ନିଅନ୍ ଇତ୍ୟାଦି–ତା' ମଧ୍ୟ ତିଆରିକରି ସେମିତି ଅଳ୍ପ ପରିମାଣରେ ମିଶାହେଉଚି । ପାଣି ପରିସ୍ରବଣ କରିବା ପାଇଁ ବଡ଼ ବଡ଼ ହୌଜ ଓ ପ୍ରକାଣ୍ଡ ବୈଦ୍ୟୁତିକ କଳସବୁ ଦେଖିବା ଭଳି ଜିନିଷ, ଯଦିଚ ସେ ସବୁର କଳକବ୍‌ଜା ଏଡ଼େ ଜଟିଳ ଯେ ତାହାର ସବୁ ବିଷୟ ବୁଝିବା ଆମ ପକ୍ଷରେ କଷ୍ଟକର । ଏତିକି ମାତ୍ର କହିପାରେ ଯେ, ମୁଁ ନିଜ ଆଖିରେ ଦେଖି ଓ ନିଜ ଜିଭରେ ଚାଖି ବୁଝିଲି ନାନା ରାସାୟନିକ ପଦାର୍ଥ ଓ ଗ୍ୟାସ୍ ନାନା ଯନ୍ତ୍ର ମଧ୍ୟରେ ଢଳାହେଉଚ ଓ ସେଥିରୁ ତିଆରିହେଉଚି ମଇଦା, ଚାହା, କଫି, ମଦ୍ୟ ଇତ୍ୟାଦି ।

ଘରଟିର ଯେତକ ଅଂଶ ଆମକୁ ଦେଖାଇ ଦିଆଗଲା ତା'ପରେ ବି ଆଉ କେତେଥର ଦେଖିବାର ସୁଯୋଗ ପାଇଥିଲୁ । ଯାହା ଦେଖିଲୁ ମନେହେଲା ଯେ ଏ ଦେଶର ଲୋକେ ଆଗରୁ ଜାଣିପାରିଥିଲେ ଯେ ତାଙ୍କ ଦେଶ ଦିନେ ସମୁଦ୍ର ଗର୍ଭକୁ ଚାଲିଯିବ, ତେଣୁ ବୁଡ଼ିଯାଇ ବି ବଞ୍ଚିରହିବାର ସମସ୍ତ ଆୟୋଜନ ସେମାନେ ଅନେକ ଆଗରୁ କରି ରଖିଥିଲେ । ସେଇ ବିଶାଳ କୋଠାଟି ଏପରି ଭାବରେ ତିଆରି ହୋଇଥିଲା ଯେ ସମସ୍ତେ ସେଥିରେ ସ୍ଥାୟୀ ଆଶ୍ରୟ ପାଇପାରିବେ । ତେଣୁ ଏହାକୁ ଆଶ୍ରୟ ସଦନ ବୋଲି ଏହାପରେ କହିବି । ପୂର୍ବେ ଯେଉଁ ସବୁ ଯନ୍ତ୍ର ବା କଳକାରଖାନା କଥା କହିଚ ସେସବୁ ଏବଂ ତାଛଡ଼ା କାଚ ପୋଷାକ ପାଇଁ କାଚକାରଖାନା, ବାହାରୁ ଭିତରକୁ ଯିବା ବଖରାଗୁଡ଼ିକ, ପାଣି ବାହାର କରି ଦେବାର ବିରାଟ ପମ୍ପଗୁଡ଼ିକ ସବୁ ସେହି ଆଶ୍ରୟସଦନର କାନ୍ଥ ଭିତରେ ତିଆରି । ପରିଷ୍କାର ବୁଝାପଡ଼େ ଯେ ଘରଟି ତିଆରି କରିବା ସମୟରେ ସେ ସବୁ ମଧ୍ୟ ତିଆରି ହୋଇଥିଲା । ବହୁ ଆଗରୁ ସବୁକଥା ଭାବିବାର ଏପରି ଆଶ୍ଚର୍ଯ୍ୟ କ୍ଷମତା ଦେଖି ଆମେ ଯେ କି ଅବାକ୍ ହେଲୁ ତା' ଭାଷାରେ ପ୍ରକାଶ କରି ପାରିବି ନାହିଁ । ଏ କେଉଁ ଆଶ୍ଚର୍ଯ୍ୟ ଜାତି ? ଆମେ ଯେତେଦୂର ଜାଣିପାରିଲୁ ସେଥିରୁ ମନେହେଲା ଯେ ଏହି ଜାତିର ଦୁଇଟି ପ୍ରକାଣ୍ଡ ଶାଖା ଥିଲା, ଗୋଟିଏ ଯାଇଥିଲା ମଧ୍ୟ ଆମେରିକାକୁ ଏବଂ ଅନ୍ୟଟି ମିଶରକୁ । ସେ ଦୁଇ ଦେଶରେ ସେମାନେ ନିଜ ସଭ୍ୟତାର ଛାପ ରଖିଯାଇଛନ୍ତି, ଯଦିଚ ତାଙ୍କ ନିଜ ଦେଶ ଆଟ୍‌ଲାଣ୍ଟିକ୍ ମହାସାଗର ତଳକୁ ଚାଲିଯାଇଛି । କିନ୍ତୁ ଏକଥା ମଧ୍ୟ ମନେହେଲା ଯେ ଏମାନଙ୍କ ଜ୍ଞାନ ବିଜ୍ଞାନ ଏତେକାଳ ପରେ ବି ଆଉ ବିଶେଷ ଅଗ୍ରସର ହୋଇନାହିଁ । ଏମାନଙ୍କ ବିଜ୍ଞାନ ମାରାକଟ୍‌ଙ୍କ ହାତରେ ପଡ଼ିଲେ ହୁଏତ ଆହୁରି ବଡ଼ ଓ ଆଶ୍ଚର୍ଯ୍ୟ କିଛି ହୋଇପାରିଥାନ୍ତା । ସେ ବିଜ୍ଞାନ ନଜାଣି ମଧ୍ୟ ସ୍କାନ୍‌ଲନ୍ ତାର ପ୍ରତ୍ୟୁତ୍ପନ୍ନମତିତା ଓ କଳକବ୍‌ଜାରେ ଦକ୍ଷତା ଦ୍ୱାରା ଇତି ମଧ୍ୟରେ ଯେଉଁସବୁ କ୍ରିୟାକର୍ମ ଦେଖାଉଥିଲା ସେଥିରେ

ଏମାନେ ଆଶ୍ଚର୍ଯ୍ୟ ହେଉଥିଲେ । ଜାହାଜ ଛାଡ଼ି ଇସ୍ପାତ ପିଞ୍ଜରା ଭିତରେ ଆସିବାବେଳେ ସ୍କାନ୍‌ଲନ୍‌ର କୋଟ୍ ପକେଟ୍‌ରେ ଥିଲା ଗୋଟିଏ ମାଉଥ୍-ଅର୍ଗାନ୍ । ତାକୁ ବଜାଇ ସେ ଏମାନଙ୍କଠାରୁ ବହୁ ପ୍ରଶଂସା ପାଇଲା ।

ସେ ଘରଟିର ସବୁ ଅଂଶ ଆମକୁ ଦେଖାଯାଇନାହିଁ । ଏ ବିଷୟରେ ଆଉ ଟିକିଏ ଖୋଲି କୁହେ । ଗୋଟିଏ ବାରଣ୍ଡା ବାଟେ ସଦାବେଳେ ଲୋକେ ଯାତାୟାତ କରିବାର ଦେଖିଛୁ, କିନ୍ତୁ ଆମ ଗାଇଡ୍ ଥରେ ବି ସେ ବାଟ ଦେଇ ଆମକୁ ନେଲେ ନାହିଁ । ତେଣୁ ସେ ପଟେ କ'ଣ ଅଛି ଦେଖିବାର ଇଚ୍ଛା ଆମର ବଢ଼ିବାକୁ ଲାଗିଲା । ଦିନେ ଲୋକ ଚଳାଚଳ ନଥିବା ସମୟରେ ଆମେ ଆମ ବଖରାରୁ ବାହାରି ସେଇ ଅଜଣାସ୍ଥାନ ଆଡ଼େ ଗଲୁ । ବାଟଟା କ୍ରମେ ଗୋଟାଏ ଉଚ୍ଚ ଖିଲାଣବାଲା ଦୁଆର ପାଖରେ ପହଞ୍ଚିଲା । ମନେହେଲା ସମସ୍ତ କବାଟଟା ସୁନାରେ ତିଆରି । ସେ କବାଟ ଠେଲି ଭିତରେ ପ୍ରବେଶ କରି ଦେଖିଲୁ ଆମେ ଅଛୁ ପଡ଼ିଆ ପରି ବିସ୍ତୀର୍ଣ୍ଣ ଗୋଟିଏ ବିରାଟ ହଲ୍‌ରେ, ଲମ୍ବା ଓ ଚଉଡ଼ାରେ ଦୁଇଶହ ଫୁଟ୍‌ରୁ ଊଣା ହେବନାହିଁ । ଚାରିପଟ କାନ୍ଥରେ ନାନା ଉଜ୍ଜ୍ୱଳ ରଙ୍ଗ ଓ କିମ୍ଭୂତକିମାକାର ସବୁ ଜୀବର ଅଦ୍ଭୁତ ଛବି ଓ ମୂର୍ତ୍ତି । ମୂର୍ତ୍ତିମାନଙ୍କ ମୁଣ୍ଡରେ ପୁଣି ଆମେରିକାର ଆଦିବାସୀମାନଙ୍କର ରୀତିମତ ରାଜସଜ୍ଜାଭଳି ପ୍ରକାଣ୍ଡ ମୁକୁଟ । ଏଇ ବିଶାଳ ବଖରାର ଗୋଟାଏ ମୁଣ୍ଡରେ ବୁଦ୍ଧମୂର୍ତ୍ତି ଢଙ୍ଗର ଏକ ବିରାଟ ମୂର୍ତ୍ତି । କିନ୍ତୁ ବୁଦ୍ଧମୂର୍ତ୍ତି ମୁଖରେ ଯେଉଁ କାରୁଣ୍ୟ ଫୁଟିଥାଏ ଏଥିରେ ତା' ପରିବର୍ତ୍ତେ ରହିଛି ଉତ୍କଟ କ୍ରୋଧ । ତା' ସାଙ୍ଗକୁ ଆଖି ଦୁଇଟିର ରଙ୍ଗ ପୁଣି ଲାଲ । ତା' ଭିତରେ ପୁଣି ବିଜୁଳି ଆଲୁଅ ଖଞ୍ଜାହୋଇଥିବାରୁ ମୂର୍ତ୍ତିଟି ଦେଖିବାକୁ ହୋଇଚ ଆହୁରି ଭୀଷଣ । ତା' କୋଳରେ ପ୍ରକାଣ୍ଡ ବଡ଼ ଗୋଟାଏ ଚୁଲି । ନିକଟକୁ ଯାଇ ଦେଖିଲି ତାହା ପାଉଁଶରେ ପୂର୍ଣ୍ଣ ।

ମାରାକଟ୍ କହିଲେ, 'ଏ ହେଲେ ମୋଲକ୍ ବା ବେଥ୍ୟାଲ–ପ୍ରାଚୀନ ଫିନୀଶିଆର ଆଦିମ ଦେବତା ।'

ମୋର ମନେପଡ଼ିଗଲା, ଶୁଣିଥିଲି ପ୍ରାଚୀନ କାଳରେ ଏଇ ଦେବତା ପାଖରେ ନରବଳି ଦିଆହେଉଥିଲା । ମୁହଁରୁ ବାହାରିଗଲା 'କି ସର୍ବନାଶ ! ଆପଣ କହୁଛନ୍ତି କ'ଣ ? ଏଠାକାର ଏଇ ଶାନ୍ତିଶିଷ୍ଟ ମଣିଷମାନେ ନରବଳି ଦିଅନ୍ତି ?'

ସ୍କାନ୍‌ଲନ୍ ବିଧା ଉଠାଇ କହିଲେ, 'ଆଶାକରେ ତାଙ୍କ ଘରର ରୀତି ସେମାନେ ଘର ଭିତରେ ପାଳନ୍ତି । ଆମ ଉପରେ ଏସବୁ ପ୍ରୟୋଗ କରିବାକୁ ନଆସନ୍ତି ଯେମିତି ।'

ମୁଁ କହିଲି, 'ନା, ଏତେଦିନରେ ହୁଏତ ସେମାନଙ୍କର ଶିକ୍ଷା ହୋଇଚି । ଦୁର୍ଦ୍ଦଶାରେ ପଡ଼ିଲେ ମଣିଷ ଅନ୍ୟ ପ୍ରାଣର ମୂଲ୍ୟ ବୁଝିବାକୁ ଶିଖେ ।'

ମାରାକଟ୍ ପାଉଁଶ ଖେଳାଉ ଖେଳାଉ କହିଲେ, 'ଠିକ୍ କଥା । ଏ ସେହି ପୁରାତନ କୁଳଦେବତା ନିଶ୍ଚୟ । ତେବେ କୁଳଧର୍ମଟି ଆଉ ସେତେ ଉଗ୍ର ନାହିଁ ମନେହୁଏ । କିନ୍ତୁ ଦିନ ଥିଲା ହୁଏତ—'

ଏହିପରି ସମୟରେ ଗୋଟାଏ ରୁକ୍ଷ ଗଳାର ଶବ୍ଦ ଆମ ଗବେଷଣାରେ ବାଧାଦେଲା । ଦେଖିଲି ହଳଦିଆ ଲୁଗା ଓ ଲମ୍ବା ଟୋପି ପିନ୍ଧା କେଇଜଣ ଲୋକ—ନିଶ୍ଚୟ ଏଇ ମନ୍ଦିରର ପୁରୋହିତ । ସେମାନଙ୍କର ଚେହେରା ଦେଖି ମନେହେଲା ଏଥର ଆମେହିଁ ବେଓ୍ୱାଲଙ୍କ ଶେଷ ବଳି ହେଲୁ ବୋଧହୁଏ । ଜଣେ ତ ତା' କମରବନ୍ଧ୍‌ରୁ ଗୋଟାଏ ଛୁରା ବାହାରକଲା । ଅଗ୍ନିଶର୍ମା ହୋଇ ଚିତ୍କାର କରି କରି ସେମାନେ ସେମାନଙ୍କ ପବିତ୍ର ଦେବସ୍ଥାନରୁ ଆମକୁ ପ୍ରାୟ ଧକ୍‌କାମାରି ବାହାରକରିଦେଲେ ।

ସ୍କାନ୍‌ଲନ୍ ପାଟିକରି କହିଲା, 'ମୋ ରାଣ, ଦେହରେ ଟିପ ମାରିଚ ତ ବାପଧନର ମୁଣ୍ଡ ରହିବ ନାହିଁ । ଆରେ ହେ ଶୁଖୁଆ, ମୋ କୋଟ୍ ଛାଡ଼ କହୁଛି ।'

ମୋର ଆଶଙ୍କା ହେଲା ଝଗଡ଼ା ହୋଇଯିବ । ଯାହାହେଉ ସ୍କାନ୍‌ଲନ୍ ତା'ର ହାତ ବ୍ୟବହାର କରିବା ପୂର୍ବରୁ ଆମେ ତାକୁ କୌଣସି ପ୍ରକାରେ ହଟାଇ ଆଣିଲୁ । ତା'ପରେ ସିଧା ଆସିଲୁ ଆମ ବଖରାକୁ । ମାଣ୍ଡା ଓ ଅନ୍ୟମାନଙ୍କ ଭାବଭଙ୍ଗୀରୁ ବୁଝିଲି ଯେ ଆମ ଗୁପ୍ତ ଅଭିଯାନ କଥା ତାଙ୍କୁ ମାଲୁମ୍ ହୋଇଚି ଓ ସେଥିପାଇଁ ସେମାନେ ବିରକ୍ତ ।

ତେବେ ଏହାଛଡ଼ା ଆଉ ଗୋଟାଏ ଦେବସ୍ଥାନ ବି ଥିଲା ଏବଂ ସେଇଟି ବିନା ଆପତ୍ତିରେ ଆମକୁ ଦେଖାଇଦିଆହେଲା । ତା' ଫଳରେ ସେମାନଙ୍କ ଓ ଆମ ଭିତରେ ସାଧାରଣ କଥାବାର୍ତ୍ତା ହେବାର ଗୋଟାଏ ଉପାୟ ବାହାରିଲା । ସେ କଥା ଶୁଣନ୍ତୁ । ଏଇ ଜାଗାଟା ଆଶ୍ରୟ ସଦନର ତଳମହଲାରେ । ତା'ର କୌଣସି ସାଜସଜ୍ଜା ବା ଅନ୍ୟ ବୈଶିଷ୍ଟ୍ୟ ନାହିଁ । କେବଳ ବଖରାର ଗୋଟାଏ ମୁଣ୍ଡରେ ହାତୀଦାନ୍ତର ଗୋଟିଏ ନାରୀ ମୂର୍ତ୍ତି । ତାଙ୍କ ହାତରେ ବର୍ଚ୍ଛା ଏବଂ କାନ୍ଧ ଉପରେ ବସିଛି ଗୋଟିଏ ପେଚା । ଗୋଟିଏ ବୟସ୍କ ବୃଦ୍ଧ ସେଠାକାର ରକ୍ଷକ । ତାଙ୍କର ଏତେ ବୟସ ସତ୍ତ୍ୱେ ସେ ଆଶ୍ରୟସଦନର ମଣିଷ ଅପେକ୍ଷା ଏକ ଉନ୍ନତତର ଜାତିର ମଣିଷ—ଦେହରେ ଓ ମନରେ । ମାରାକଟ୍ ଓ ମୁଁ ସେହି ମୂର୍ତ୍ତିକୁ ଚାହିଁ ମନେପକାଉଛୁ ଏପରି ମୂର୍ତ୍ତି ଆଉ କେଉଁଠି ଦେଖିଛୁ, ଏହିପରି ସମୟରେ ସେହି ବୃଦ୍ଧ ଆମକୁ ଲକ୍ଷ୍ୟକରି କଥା କହିଲେ । ମୂର୍ତ୍ତିଟି ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ, 'ଥିଆ' ।

ମୁଁ ଆଶ୍ଚର୍ଯ୍ୟ ହୋଇ କହିଲି, 'ଆରେ, ଏ ତ ଗ୍ରୀକ୍ କହୁଛନ୍ତି ।' .

ସେ ପୁଣି କହିଲେ, 'ଥିଆ—ଆଥିନା' ।

ଆଉ ସନ୍ଦେହ ନାହିଁ । ସେ ଗ୍ରୀକ୍ ଭାଷାରେ କହୁଛନ୍ତି—ଦେବୀ ଆଥିନା ।

ମାରାକଟ୍ କି ଅସାଧାରଣ ପଣ୍ଡିତ ! ସେ ତତ୍କ୍ଷଣାତ୍ ଗ୍ରୀକ୍ ଭାଷାରେ ବୃଦ୍ଧଙ୍କୁ ଜିଜ୍ଞାସାବାଦ ଆରମ୍ଭ କରିଦେଲେ । ବୃଦ୍ଧ କିନ୍ତୁ ସେ ଭାଷା ପୂରା ବୁଝିପାରିଲେନାହିଁ ଓ ତାହାର ଉତ୍ତର ଏପରି ଏକ ପ୍ରାଚୀନ ଭାଷାରେ ଦେଲେ ଯେ ତା' ପ୍ରାୟ ଅବୋଧ । ତଥାପି ମାରାକଟ୍ କ୍ରମେ ଭାଷାର କିଛି କିଛି ଶିଖିନେଲେ । ଏବେ ସେମାନଙ୍କ ମଧ୍ୟରୁ ଅନ୍ତତଃ ଜଣେ ଲୋକ ପାଇଲୁ ଯାହାଙ୍କ ଜରିଆରେ ଅସ୍ପଷ୍ଟଭାବରେ ନିଜ ମନୋଭାବ ଯତ୍‌କିଞ୍ଚିତ ଜଣାଇପାରିଲୁ ।

ଏହି ଦେବସ୍ଥାନ ଦେଖିଆସି ମାରାକଟ୍ ଆମପାଖରେ ଗୋଟିଏ ବକ୍ତୃତା ଦେଲେ । ଛାତ୍ରଙ୍କୁ ପଢ଼ାଇବା ଭଙ୍ଗୀରେ ତୀକ୍ଷଣ ଉଚ୍ଚ କଣ୍ଠରେ ସେ କହିଲେ 'ଆଟଲାଣ୍ଟିସ୍ ସାଗରମଗ୍ନ ହେବାର କିଂବଦନ୍ତୀ ଯେ ସତ୍ୟ ଏହି ବୃଦ୍ଧ ତାଁ'ର ଗୋଟିଏ ପ୍ରମାଣ । ତୁମେମାନେ ଜାଣ–କିମ୍ବା ହୁଏତ ଜାଣନା ଯେ ଆଟଲାଣ୍ଟିସ୍ ଯେତେବେଳେ ଧ୍ୱଂସ ହୋଇଯାଏ ସେତେବେଳେ ସେଠାକାର ଲୋକମାନଙ୍କ ସହିତ ଆଦିମ ଗ୍ରୀକ୍‌ମାନଙ୍କର ଯୁଦ୍ଧ ଚାଲିଥିଲା । ସହଜରେ ଅନୁମେୟ ଯେ ଆଟଲାଣ୍ଟୀୟମାନେ ଅନେକ ଗ୍ରୀକ୍‌ଙ୍କୁ ବନ୍ଦୀ କରିଥିଲେ । ସେମାନଙ୍କ ଭିତରୁ କେତେକ ହୁଏତ ଆଶ୍ରୟ ସଦନରେ କିଛି କିଛି କାମ କରୁଥିଲେ । ସେମାନେ ନିଜର ଧର୍ମବିଶ୍ୱାସ ନେଇ ଆଟଲାଣ୍ଟୀୟମାନଙ୍କ ସହ ଏଠାକୁ ଆସନ୍ତି । ମୁଁ ଯାହା ବୁଝୁଛି, ଏହି ବୃଦ୍ଧ ଜଣକ ସେଇ ପ୍ରାଚୀନ ଗ୍ରୀକ୍‌ମାନଙ୍କର କୌଣସି ପୁରୋହିତର ବଂଶଧର । ହୁଏତ ପରେ ଏହି ଗ୍ରୀକ୍‌ମାନଙ୍କ ଭିତରୁ ଆହୁରି କାହାକୁ ଦେଖିପାରିବା ।'

ସ୍କାନ୍‌ଲନ୍ କହିଲା, 'ଏହାଙ୍କୁ ଗୋଟିଏ କଥା ମୁଁ କହିବି । ଗୋଟାଏ ଦେବମୂର୍ତ୍ତି ରଖିବା ଯଦି ନିହାତି ଦରକାର ତେବେ ପୋଡ଼ା କୋଇଲା ଚଳିବାଲା ସେଇ ନାଲିଆଖିଆ ଗବ୍‌ଦଲ୍‌ଟାଠାରୁ ଗୋଟିଏ ଖାସା ନାରୀମୂର୍ତ୍ତି ବୋଧହୁଏ ଭଲ–ଅବଶ୍ୟ ତାଙ୍କର ଖୁସି ।'

ମୁଁ କହିଲି, 'ଭାଗ୍ୟକୁ ସେମାନେ ତୁମର ଅଭିମତ ଜାଣିପାରୁନାହାନ୍ତି, ନହେଲେ ଖ୍ରୀଷ୍ଟାନ୍ ସହଦଭାବରେ ତୁମର ଇହଲୀଳା ଶେଷ କରିବାକୁ ହୁଅନ୍ତା ।'

'ତା'ହେଲେ ସେମାନଙ୍କୁ ଆମେରିକାନ୍ ନାଚର ବାଜା ଶୁଣାଇବ କିଏ ? ମୋ ସହିତ ଟାପରା ହେବା ସେମାନଙ୍କର ପ୍ରାୟ ଅଭ୍ୟାସରେ ପଡ଼ିଗଲାଣି ଯେ !'

ବାସ୍ତବିକ ଏମାନେ ସମସ୍ତେ ବେଶ୍ ଖୁସିବାସିଆ ମଣିଷ । ଏମାନଙ୍କ ଗହଣରେ ଆମ ଦିନଗୁଡ଼ିକ ବେଶ୍ ଭଲରେ କଟୁଥିଲା । କିନ୍ତୁ କେବେ କେବେ ସମସ୍ତ ମନପ୍ରାଣ ଚାଲିଯାଉଥିଲା ଆକାଶର ଆଲୋକ ରାଜ୍ୟରେ ଛାଡ଼ିଆସିଥିବା ଆମ ନିଜ ଦେଶକୁ । ଏବେବି ଇଚ୍ଛା ହୁଏ – ଆଖି ସାମନାରେ ଭାସିଉଠେ ଅକ୍‌ସଫୋର୍ଡ଼ର ସେହି କଲେଜ-ପ୍ରାଙ୍ଗଣ, କିମ୍ବା ହାର୍ଭାର୍ଡ଼ର ସେଇ ଧାଡ଼ିକୁ ଧାଡ଼ି ଏଲମ୍ ଗଛ ଓ ଖେଳପଡ଼ିଆ । ଆଟଲାଣ୍ଟିକ୍ ମହାସାଗର ତଳେ ଅଦ୍ଭୁତ ଅଜଣା ଦେଶରେ ବସି ଆମ ନିଜ ଦେଶ ପ୍ରଥମେ ଲାଗୁଥିଲା

ଚନ୍ଦ୍ରଲୋକଭଳି ସୁଦୂର । ବର୍ତ୍ତମାନ କେବଳ ମୋ ଦେଶର ମୁହଁ ଦେଖିବାର କ୍ଷୀଣ ଆଶା ମନରେ ଜାଗୁଛି ।

## ଛଅ

'ଆମେ ଏମାନଙ୍କର ଅତିଥି ନା ବନ୍ଦୀ–ଥରେ ଥରେ ମନରେ ସନ୍ଦେହ ହୁଏ । ଯା' ହେଉ, କିଛିଦିନ ପରେ ଦିନେ ସେମାନେ ସମୁଦ୍ର ଚଟାଣ ଉପରେ ବୁଲିବାକୁ ଆମକୁ ନେଇଗଲେ । ମାଣ୍ଡା ବ୍ୟତୀତ ଆଉ ପାଞ୍ଚଜଣ ଆମ ସାଙ୍ଗରେ ଥିଲେ । ଇସ୍ପାତ ପିଞ୍ଜରାରୁ ଉଦ୍ଧାର ପାଇବା ପରେ ଆମେ ପ୍ରଥମେ ଯେଉଁ ବଖରାରେ ପ୍ରବେଶ କରିଥିଲୁ ସେଇଠି ସମସ୍ତେ ସମବେତ ହେଲୁ । ଏଥର ସେ ବଖରାଟା ଭଲକରି ଦେଖିବାର ସମୟ ପାଇଲୁ । ତାହା ଖୁବ୍ ବଡ଼, ଲମ୍ବା ଓ ଚଉଡ଼ାରେ ପ୍ରାୟ ଶହେ ଫୁଟ ହେବ । ଛାତଟା ନୁଆଁଣିଆ । ଛାତ ଓ କାନ୍ଥ ସାମୁଦ୍ରିକ ଉଦ୍ଭିଦ ଦ୍ୱାରା ସବୁଜ ହୋଇଯାଇଚି । ପାଣି ବି ଠୋପା ଠୋପା ଗଳୁଥିଲା । ଚାରିପଟର କାନ୍ଥରେ ଧାଡ଼ି ଧାଡ଼ି କଣ୍ଟା ମରାହୋଇଚ । ପ୍ରତ୍ୟେକ କଣ୍ଟାରେ ଗୋଟିଆ ଚିହ୍ନ ଅଙ୍କା ହୋଇଚ–ବୋଧହୁଏ ନମ୍ବର । ପ୍ରତ୍ୟେକ କଣ୍ଟାରେ ଗୋଟିଏ କରି କାଚ ଗୋଲକ ଏବଂ ଏକଯୋଡ଼ା ପବନ ତିଆରି କରିବାର ବାକ୍ସ । ବଖରାର ଚଟାଣ ବଡ଼ ବଡ଼ ପଥରରେ ତିଆରି । ବହୁଯୁଗ ଧରି ମଣିଷ ଗୋଡ଼ ଘଷି ହୋଇ ହୋଇ ସ୍ଥାନେ ସ୍ଥାନେ ଗାତ ହୋଇଯାଇଛି, ସେଥିରେ ପାଣି ଜମିଚି । କାର୍ନିସ୍ ଉପରେ ପ୍ରତିପ୍ରଭା ନଳ ଆଲୁଅ ଖଞ୍ଜା ହୋଇଛି – ସାରା ବଖରାଟି ସେଥିରେ ଆଲୋକିତ ।

କାଚ ପୋଷାକଗୁଡ଼ିକ ଆମ ଦେହରେ ବାନ୍ଧିଦିଆଗଲା । କୌଣସି ହାଲୁକା ଧାତୁରେ ତିଆରି ଗୋଟିଏ ଲେଖାଏଁ ଗୋଜିଆ ଦଣ୍ଡା ପ୍ରତ୍ୟେକଙ୍କ ହାତରେ ଦିଆଗଲା । ତା'ପରେ କାନ୍ଥ ଦେହରେ ଯେଉଁ ରେଲିଂ ଅଛି ତାକୁ ଦୃଢ଼ଭାବରେ ଧରିବାକୁ ମାଣ୍ଡା ଇସାରାରେ ଆଦେଶ ଦେଲେ ଓ ଆମେ ସମସ୍ତେ ସେହିପରି ଧରିଲୁ । ବାହାରର କବାଟଟା ଖୋଲିଦେବା ମାତ୍ରକେ ସମୁଦ୍ର ପାଣି ଏଡ଼େ ବେଗରେ ମାଡ଼ିଆସିଲା ଯେ ଆମେ ଯଦି ରେଲିଂ ଧରିନଥାନ୍ତୁ ଛିଡ଼ାହୋଇ ପାରନ୍ତୁ ନାହିଁ । ପାଣିର ପତନ ଅଳ୍ପ ସମୟ ମଧ୍ୟରେ ଆମ ମୁଣ୍ଡ ଉପରକୁ ଉଠିଗଲା ଓ ବେଗ ମଧ୍ୟ କମିଗଲା । ମାଣ୍ଡା ଆମକୁ ନେଇ ଦୁଆର ପାଖକୁ ଗଲେ । ଦୁଆର ପାର ହେବା ମାତ୍ରକେ ଆମେ ସମୁଦ୍ରର ପଙ୍କ ଶଯ୍ୟାରେ ଉପସ୍ଥିତହେଲୁ । ଖୋଲା ଦୁଆର ଆମର ପ୍ରତ୍ୟାବର୍ତ୍ତନକୁ ଅପେକ୍ଷା କରି ରହିଲା ।

ସମୁଦ୍ରତଳେ ସେଇ ଆଶ୍ଚର୍ଯ୍ୟ ଅନୁପ୍ରଭା ଆଲୁଅ ଥରି ଥରି ଜଳୁଚି । ସେଥିରେ ଆମେ ଅନ୍ତତଃ ପାଏ ଦୂର ବାଟ ଦେଖିପାରୁଥିଲୁ । ଦୂରରେ ଗୋଟାଏ ଖୁବ୍ ଉଜ୍ଜ୍ୱଳ

ଆଲୁଅ ଦେଖି ଆମେ ଆଶ୍ଚର୍ଯ୍ୟ ହେଲୁ । ମାଣ୍ଡା ତାକୁହିଁ ଲକ୍ଷ୍ୟ ରଖି ଚାଲିଲେ ଓ ତାଙ୍କ ପଛେ ପଛେ ଆମେ ଧାଡ଼ି ବାନ୍ଧି ଚାଲିଲୁ । ଶୀଘ୍ର ଯିବା ସମ୍ଭବ ନଥିଲା, କାରଣ ପାଣି ଠେଲି ତ ଯିବାକୁ ପଡୁଥିଲା, ତା ଛଡ଼ା ନରମ ପଙ୍କରେ ଗୋଡ଼ ଗଳିଯାଉଥିଲା । ସେଇ ଉଜ୍ଜ୍ୱଳ ଆଲୋକଟି କ'ଣ ଆମେ କିଛିକ୍ଷଣ ପରେ ବୁଝିପାରିଲୁ । ତାହା ହେଉଛି ଆମେ ଛାଡ଼ିଆସିଥିବା ଇସ୍ପାତ ପିଞ୍ଜରା–ଆମ ବିଗତ ଜୀବନର ଶେଷ ନିଦର୍ଶନ । ସମୁଦ୍ରତଳେ ପୋତି ହୋଇ ପଡ଼ିଥିବା ସେଇ ବିରାଟ ଅଟ୍ଟାଳିକାର ଅନେକ ଗମ୍ବୁଜ ଭିତରୁ ଗୋଟିଏ ଉପରେ ସେ ପିଞ୍ଜରାଟି ଅଣେଇ ହୋଇ ପଡ଼ିରହିଚି, ଆଉ ତା' ଭିତରର ଆଲୁଅ ଗୁଡ଼ିକ ସେ ପର୍ଯ୍ୟନ୍ତ ଜଳୁଚ । ଭିତରଟିର ତିନି ଭାଗ ପାଣିରେ ଭର୍ତ୍ତି । କିନ୍ତୁ ଯେଉଁଠି ବିଜୁଳି ଆଲୁଅର ସାଜ ସରଞ୍ଜାମ ଥିଲା ବଦ୍ଧବାୟୁ ଯୋଗୁଁ ସେଠାକୁ ପାଣି ଯାଇପାରିନାହିଁ । ସେଇ 'ସେଟି' ଯନ୍ତ୍ରପାତି ସବୁ ଠିକ୍ ରହିଚି । କେତେଗୁଡ଼ିଏ ବଡ଼ ବଡ଼ ମାଛ ତା' ଭିତରେ ବୁଲୁଚନ୍ତି, ଯେମିତି ବୋତଲ ଭିତରେ ରଖାହୋଇଥିବା ସୌଖୀନ ମାଛ । ଏସବୁ ମିଶି ସେ ଦିଶୁଥିଲା ଅଦ୍ଭୁତ । ଜଣ ଜଣ ହୋଇ ଆମେ ତିନିଜଣ ଖୋଲା ଦୁଆର ବାଟେ ଚଢ଼ି ଭିତରକୁ ଗଲୁ । ମାରାକଟ୍ ତାଙ୍କର ଗୋଟାଏ ଟିପା ବହି ଉଦ୍ଧାର କଲେ, ପାଣି ଉପରେ ଭାସୁଥିଲା । ସ୍କାନ୍‌ଲନ୍ ଓ ମୁଁ ଆମ ନିଜର କେତେକ ଜିନିଷ ବାହାର କରି ଆଣିଲୁ । ମାଣ୍ଡା ମଧ୍ୟ ତାଙ୍କର ଦୁଇ ତିନି ଜଣ ସାଥୀ ସହ ଭିତରକୁ ପ୍ରବେଶ କଲେ । କାନ୍ଥରେ ଥିବା ଗଭୀରତା-ମାପକ, ଉଷ୍ଣତାମାପକ ଇତ୍ୟାଦି ନାନା ଯନ୍ତ୍ରପାତି ଖୁବ୍ ଆଗ୍ରହର ସହିତ ସେମାନେ ଦେଖିଲେ । ଉଷ୍ଣତାମାପକ ଅର୍ଥାତ୍ ଥର୍ମୋମିଟର୍‌ଟି ଆମେ କାନ୍ଥରୁ ଖୋଲି ସାଙ୍ଗରେ ନେଇଆସିଲୁ । ବିଜ୍ଞାନୀମାନଙ୍କ ପକ୍ଷରେ ଏହା ଏକ କୌତୂହଳୋଦ୍ଦୀପକ ତଥ୍ୟ ଯେ ସମୁଦ୍ର ଜଳର ତାପମାନ ଚାଳିଶ ଡିଗ୍ରୀ ଫାରେନ୍‌ହାଇଟ୍, ଅର୍ଥାତ୍ ଯେଉଁ ତାପମାନରେ ପାଣି ଜମି ବରଫ ହୋଇଯାଏ ତାଠୁ ଆଠ ଡିଗ୍ରୀ ବେଶି । ଯେଉଁ ରାସାୟନିକ କାରଣ ଯୋଗୁଁ ସିନ୍ଧୁମଳରେ ଅନୁପ୍ରଭାର ଉତ୍ପତ୍ତି ହୁଏ ସେହି କାରଣଯୋଗୁଁ ହିଁ ସମୁଦ୍ରତଳର ତାପମାନ ତା'ର ଉପରସ୍ତରଠୁ ବେଶି ।

ଆମକୁ ଟିକିଏ ବୁଲାଇ ଆଣିବା ଛଡ଼ା ବୋଧହୁଏ ଅନ୍ୟ ଉଦ୍ଦେଶ୍ୟ ବି ଥିଲା ଏହି ଅଭିଯାନର, ତାହା ହେଲା ଆହାର୍ଯ୍ୟର ଯୋଗାଡ଼ । ଆମର ଆଟଲାଣ୍ଟୀୟ ବନ୍ଧୁମାନେ ବେଳେବେଳେ ତାଙ୍କର ଗୋଜିଆ ଦଣ୍ଡା ଜୋର୍‌ରେ ତଳ ଆଡ଼କୁ ଭୁସିଦେଉଥାନ୍ତି ଏବଂ ପ୍ରତ୍ୟେକଥର ଗୋଟାଏ ଲେଖାଏଁ ଚେପ୍‌ଟା କହରା ରଙ୍ଗର ମାଛ ଗୁନ୍ଥି ହୋଇଯାଉଥାଏ । ମାଛ ସବୁ ସମୁଦ୍ର ଚଟାଣରେ ଏମିତି ମିଶିଯାଉଥିଲେ ଯେ ଅନଭ୍ୟସ୍ତ ଆଖିରେ ସେମାନଙ୍କୁ ନଜର କରିବା ମୁସ୍କିଲ । ଦେଖୁ ଦେଖୁ ସେମାନଙ୍କ ଭିତରୁ ପ୍ରତ୍ୟେକଙ୍କ ଅଣ୍ଟାରୁ ଦି' ତିନିଟାକରି ମାଛ ଓହଳିଲା । ସ୍କାନ୍‌ଲନ୍ ଓ ମୋତେ ତାଙ୍କ

କାଇଦା ଶିଖିବା ପାଇଁ ବେଶି ସମୟ ଲାଗିଲା ନାହିଁ, ଦି'ଟା କରି ମାଛ ଆମେ ବି ଗୁଡ଼ି ପାରିଲୁ । କିନ୍ତୁ ମାରାକଟ୍ ଚାଲିଥାନ୍ତି ସ୍ୱପ୍ନାବିଷ୍ଟ ଭଳି । ସାଗର ଗର୍ଭର ଅପରୂପ ସୌନ୍ଦର୍ଯ୍ୟରେ ସେ ଆତ୍ମହରା । ବେଳେ ବେଳେ ଉତ୍ସାହପ୍ରାବଲ୍ୟରୁ ଗୋଟେ ଗୋଟେ ବକ୍ତୃତା ଝାଡୁଥାନ୍ତି, ଯଦିଚ ଆମେ ଶୁଣିପାରୁନଥାଉ, କେବଳ ଆଖିରେ ଦେଖୁଥାଉ ।

ଚତୁର୍ଦ୍ଦିଗରେ ଧୂସର ସମଭୂମି ଦେଖି ମନେକରିଥିଲି ସେଠି ଆଉ କୌଣସି ବୈଚିତ୍ର୍ୟ ନାହିଁ । କିନ୍ତୁ ବର୍ତ୍ତମାନ ଜାଣିଲି, ପୃଥିବୀ ଉପର ପରି ଏଠି ମଧ୍ୟ ନଦୀ ଅଛି ଏବଂ ସେ ନଦୀରେ ଜଳସ୍ରୋତ ମଧ୍ୟ ଅଛି । ନରମ ପଙ୍କ କାଟି ସେ ଅନ୍ତଃସାଗରୀୟ ସ୍ରୋତ ବହିଚାଲିଚି, ତଳର ଲାଲ ମାଟି ବାହାରିପଡ଼ିଚି । ସେ ଲାଲମାଟି ଅସଂଖ୍ୟ ଧଳା ଧଳା ଜିନିଷରେ ଆଚ୍ଛାଦିତ । ଆମେ ଭାବଥିଲୁ ସେ ସବୁ ହୁଏତ ଶାମୁକା ବା ଶଙ୍ଖ, କିନ୍ତୁ ପରୀକ୍ଷା କରିବାରୁ ଜଣାଗଲା ସେ ସବୁ ତିମି ମାଛର କାନର ହାଡ଼ ଓ ମଗର ଏବଂ ଅନ୍ୟାନ୍ୟ ଜନ୍ତୁର ଦାନ୍ତ । ପନ୍ଦର ଇଞ୍ଚ ଲମ୍ବା ଗୋଟିଏ ଦାନ୍ତ ମୁଁ ପାଇଲି । ଭଗବାନଙ୍କୁ ଧନ୍ୟବାଦ ଦେଲି ଏଇଥିପାଇଁ ଯେ ଏମିତି ଭୟଙ୍କର ଜନ୍ତୁମାନେ ପାଣିର ଉପର ସ୍ତରରେ ଥାନ୍ତି । ମାରାକଟ୍‌ଙ୍କ ମତରେ ସେ ଦାନ୍ତ ହେଉଛି କୌଣସି ଏକ ଜାତିର ଅତିକାୟ ହିଂସ୍ର ତିମିମାଛର ।

ସମୁଦ୍ରର ଏଇ ଗଭୀର ତଳଦେଶରେ ଗୋଟାଏ ଅଦ୍ଭୁତ କଥା ବିଶେଷ ଭାବେ ଆଖିରେ ପଡ଼େ । ପୂର୍ବେ କହିଚି ଜୈବ ପଦାର୍ଥର ଅବିରାମ ମନ୍ଥର ପତନ ଯୋଗୁଁ ସମୁଦ୍ର ଚଟାଣରୁ ଗୋଟିଏ ଉତ୍ତାପହୀନ ଆଲୁଅ ବାହାରେ । କିନ୍ତୁ ମୁଣ୍ଡ ଉପରେ ଅମାବାସ୍ୟା ରାତ୍ରି ଭଳି ଘନକୃଷ୍ଣ ଅନ୍ଧକାର । ଉପର ଆଡ଼କୁ ନ ଅନାଇଲେ ମନେହୁଏ ଶୀତକାଳର ମେଘାଚ୍ଛନ୍ନ ଦିନ । ଉପର ଘନ ଅନ୍ଧକାର ମଧ୍ୟରୁ ସାନ ସାନ ଧଳା ଖଣ୍ଡ ସବୁ ସଦାବେଳେ ଝରିପଡ଼ିଲା ଭଳି ପଡୁଥାଏ, ଠିକ୍ ବରଫ ଭଳି । ଆମ ମୁଣ୍ଡ ଉପରେ ଯେଉଁ ପାଞ୍ଚ ମାଇଲ ଗଭୀର ପାଣି ରହିଚି ତା' ଭିତରେ ଯେଉଁ ସବୁ ଶାମୁକା ଓ ଗେଣ୍ଡା ଜନ୍ମଲାଭ କରୁଛନ୍ତି, ବଢୁଛନ୍ତି ଓ ମରୁଛନ୍ତି ତାଙ୍କର ଖୋଳପା ଏସବୁ । ଅବଶ୍ୟ ଅନେକ ଖୋଳପା ତଳେ ପଡ଼ିବା ପୂର୍ବରୁ ମିଳାଇଯାଏ; କିନ୍ତୁ ବାକି ସବୁ ଯୁଗ ଯୁଗ ଧରି ଜମି ଜମି କ୍ରମଶଃ ଏଇ ବିଶାଳ ଆଶ୍ରୟ ସଦନଟିକୁ ପୋତିପକାଇଛି ।

ପୃଥିବୀ ସହିତ ଆମ ସମ୍ପର୍କର ଶେଷ ଚିହ୍ନ ଇସ୍ପାତ ପିଞ୍ଜରାଟିକୁ ପଛରେ ପକାଇ ଆମେ ଆହୁରି ଅଗ୍ରସର ହେଲୁ । ହଠାତ୍ ମନେହେଲା କଳା ଦାଗ ଭଳି କ'ଣ ଗୋଟାଏ ଆମ ଆଡ଼କୁ ଆଗେଇ ଆସୁଚି । ନିକଟ ହେବାରୁ ତାହା ଭାଙ୍ଗି ଖଣ୍ଡ ଖଣ୍ଡ ହୋଇ ହୋଇଗଲା ଦଳେ ମଣିଷ । ସମସ୍ତେ ପିନ୍ଧିଛନ୍ତି କାଚ ପୋଷାକ । ସେମାନେ ଗୋଟିଏ ଚଉଡ଼ା ସ୍ଲେଜ୍ ଗାଡ଼ି ଟାଣିଟାଣିକା ଆସୁଥିଲେ । ସେଗୁଡ଼ିକ କୋଇଲା ପୂର୍ଣ୍ଣ । ଅତ୍ୟନ୍ତ ପରିଶ୍ରମର କାମ । ସ୍ଲେଜ୍‌ଗୁଡ଼ିକରେ ମଗର ଚମଡ଼ାର ଦଉଡ଼ି ଲାଗିଚି । ସେଇ ଦଉଡ଼ି ଧରି

ସେମାନେ ପିଠି ବଙ୍କାଇ ଓ ମୁଣ୍ଡ ନୁଆଁଇ ଟାଣୁଥିଲେ । ପ୍ରତ୍ୟେକ ଦଳରେ ଜଣେ ଲେଖାଏ ସର୍ଦ୍ଦାର । ଆମେ ଲକ୍ଷ୍ୟ କଲୁ ସର୍ଦ୍ଦାର ଓ ମୂଳିଆମାନେ ଦୁଇ ଭିନ୍ନ ଜାତିର ଲୋକ । ମୂଳିଆମାନେ ଗୋରା ଓ ଡେଙ୍ଗା । ସେମାନଙ୍କର ନୀଳଆଖି ଓ ବଳବାନ୍ ଶରୀର । ସର୍ଦ୍ଦାରମାନେ ସେତେ ଗୋରା ନୁହନ୍ତି, ତାଛଡ଼ା ସେମାନେ ବାଙ୍ଗର ଓ ଚଉଡ଼ା ଆକୃତିର । କାଚ ପୋଷାକ ଭିତରୁ କଥା କହିବାର ଉପାୟ ନଥିଲା । ଆଶ୍ରୟ ସ୍ଥଳକୁ ଫେରିଆସିବା ପରେ ମାରାକଟ୍ କହିଲେ ଯେ ମୂଳିଆମାନେ ହୁଏତ ସେହି ଗ୍ରୀକ୍‌ବନ୍ଦୀମାନଙ୍କ ବଂଶଧର ଯେଉଁମାନଙ୍କ ଉପାସ୍ୟ ଦେବୀର ମୂର୍ତ୍ତି ଆମେ ସେଦିନ ଦେଖିଆସିଥିଲୁ ।

ଯାଉଁ ଯାଉଁ ଏହିପରି କେଇ ଦଳ ଲୋକ ଆମେ ଦେଖିଲୁ । ସମସ୍ତେ କୋଇଲା ବୋଝେଇ ସ୍ଲେଜ୍ ଟାଣୁଥାନ୍ତି । ଶେଷରେ ଆମେ କୋଇଲା ଖଣିରେ ଯାଇ ପହଞ୍ଚିଲୁ । ତାହା ପ୍ରକାଣ୍ଡ ଗୋଟିଏ ଗହ୍ୱର । ସେଥିରେ ପ୍ରଥମେ ଗୋଟିଏ ମାଟିର ସ୍ତର; ତା'ପରେ ଗୋଟିଏ କୋଇଲାସ୍ତର, ପୁଣି ମାଟି ଓ ତା'ପରେ କୋଇଲା, ଏମିତି ରହିଚ । ଦଳେ କୋଇଲା କାଟୁଛନ୍ତି ଓ ଆଉ ଦଳେ କୋଇଲା ଝୁଡ଼ିରେ ପୂରାଉଛନ୍ତି । ଉପର ଲୋକେ ସେଇ ଝୁଡ଼ି ସବୁ ଟାଣି ଉଠାଉଛନ୍ତି । କିଏ ଜାଣେ କେଇ ପୁରୁଷ ଧରି ସାଗରଗର୍ଭ ଖୋଳା ହୋଇ ହୋଇ ଏଇ ବିରାଟ ଗହ୍ୱର ସୃଷ୍ଟି ହୋଇଚି । ଆମେ ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଦେଖିବାକୁ ପାଇଲୁ ନାହିଁ । ଆଟଲାଣ୍ଟୀୟମାନଙ୍କର ଯାବତୀୟ ଯନ୍ତ୍ର ଓ କଳକାରଖାନା ଯେଉଁ ବିଦ୍ୟୁତ ଶକ୍ତିରେ ଚାଳିତ ହୁଏ ତାହାର ଯୋଗାଣ ଏହି କୋଇଲାରୁ ବୋଲି ବୁଝିଲୁ ।

ଏଇଠି ଗୋଟାଏ କଥା କହିରଖେ । ମାଣ୍ଡା ଓ ଅନ୍ୟ ସମସ୍ତଙ୍କ ପାଖରେ ଆମେ ଆଟଲାଣ୍ଟିସ୍ ନାମଟି ଉଲ୍ଲେଖ କରିବାରୁ ସେମାନଙ୍କ ମୁହଁରେ ଖୁବ୍ ବିସ୍ମୟ ଭାବ ପ୍ରକାଶ ପାଇଲା । ବାରମ୍ବାର ମୁଣ୍ଡ ହଲାଇ ସେମାନେ ପ୍ରକାଶ କଲେ– କଥାଟା ବୁଝିପାରିଛନ୍ତି । ଏଥିରୁ ପ୍ରମାଣ ହୁଏ ଆମ କିମ୍ବଦନ୍ତୀରେ ଦେଶଟିର ନାମ ଅବିକଳ ସେମିତି ରହିଚ ହଜାର ହଜାର ବର୍ଷ ଧରି ।

କୋଇଲା ଖଣିର ଡାହାଣ ପାଖଦେଇ ଆମେ କୋଇଲା ଖଣି ଅତିକ୍ରମ କରି ଆଗ୍ନେୟଶିଳାର ଶିଖ ପାହାଡ଼ମାଳା ନିକଟରେ ପହଞ୍ଚିଲୁ । ପୃଥିବୀର ବୁକୁ ଚିରି ପ୍ରଥମେ ଯେଉଁଦିନ ସେମାନେ ବାହାରିଥିଲେ ସେଦିନ ଭଳି ଆଜି ମଧ୍ୟ ସେମାନଙ୍କ ଦେହ ସେମିତି ପରିଷ୍କାର ଉଜ୍ଜ୍ୱଳ କଳା । ଉପରର ଘନକୃଷ୍ଣ ଅନ୍ଧକାର ମଧ୍ୟରେ କେଇ ଶହ ଫଟ ଉପରକୁ ଉଠିଯାଇଛନ୍ତି । ପାହାଡ଼ ତଳେ ସମୁଦ୍ର ଫୁଲ ଭଳି ରାଶୀକୃତ ପ୍ରବାଳସ୍ତୂପ । ତା' ଭିତରେ ଲମ୍ବା ଲମ୍ବା ଅନାବନା ଗଛର ଜଙ୍ଗଲ । ସେଇ ଜଙ୍ଗଲ କିନାରାରେ ଆମେ କିଛିକ୍ଷଣ ବୁଲିଲୁ । ଆମେ ଦେଖିବାପାଇଁ ଆମ ସାଥୀମାନେ ହାତର ଦଣ୍ଡା ଦ୍ୱାରା ସେଇ ଗଛସବୁ ବାଡ଼େଇ ତା' ଭିତରୁ ନାନା ଅଦ୍ଭୁତ ଆକାରର ମାଛ ଓ ଖୋଳପା ଥିବା ଜନ୍ତୁ

ବାହାରକଲେ । ଖାଇବା ପାଇଁ ଗୋଟାଏ ଗୋଟାଏ ସାଙ୍ଗରେ ବି ନେଲେ । ମାଇଲିଏ କିମ୍ବା ତାଠୁଁ ଅଧିକ ଆମେ ଘୂର୍ଣ୍ଣିରେ ବୁଲିବା ପରେ ମାଣ୍ଡା ହଠାତ୍ ଥମିଯାଇ ଭୟ ଓ ବିସ୍ମୟରେ ଚାରିଆଡ଼କୁ ଅନାଇବାକୁ ଲାଗିଲେ । ଆମର ସେତେବେଳେ ଖିଆଲହେଲା ଯେ ଡା: ମାରାକଟ୍ ଅଦୃଶ୍ୟ ।

ସେ ତ ନିଶ୍ଚୟ କୋଇଲା ଖଣିରେ ଆମ ସହିତ ଥିଲେ । ସେଠୁ ସେ ଆମ ସହିତ ଆଗ୍ନେୟଶିଳା ପାହାଡ଼ ପର୍ଯ୍ୟନ୍ତ ଆସିଥିଲେ ଏକଥା ବି ନିଶ୍ଚିତ । ସେ ଯେ ଆମକୁ ଛାଡ଼ି ଆଗେଇଯାଇଛନ୍ତି ଏହା ଅସମ୍ଭବ ମନେହେଲା । ଅତଏବ ସେ ନିଶ୍ଚୟ ଆମ ପଛରେ ଜଙ୍ଗଲର ପାଖାପାଖି କେଉଁଠି ଅଛନ୍ତି । ଆମର ବନ୍ଧୁମାନେ ବ୍ୟସ୍ତ ହୋଇପଡ଼ିଲେ । କିନ୍ତୁ ସେଇ ଅନ୍ୟମନସ୍କ ବିଜ୍ଞାନୀଙ୍କ ଅଜବ ଖିଆଲ କଥା ମୋତେ ଓ ସ୍କାନ୍‌ଲନ୍‌କୁ ତ ଜଣା ଥିଲା, ତେଣୁ ଆମେ ଜାଣୁ ଭୟର କୌଣସି କାରଣ ନାହିଁ, ହୁଏତ ଟିକିଏ ପରେ ଦେଖିବୁ ସେ ତନ୍ମୟ ହୋଇ କୌଣସି ସାମୁଦ୍ରିକ ଜୀବକୁ ପର୍ଯ୍ୟବେକ୍ଷଣ କରୁଛନ୍ତି । ଯେଉଁ ଆଡୁ ଆମେ ଆସିଥିଲୁ ସେଇଆଡ଼କୁ ପୁଣି ଫେରିଗଲୁ । ଶହେଗଜ ନ ଯାଉଣୁ ଡା: ମାରାକଟ୍‌ଙ୍କ ଦେଖା ମିଳିଲା ।

ସେ ଦୌଡୁଥାନ୍ତି—ଏମିତି ଦୌଡୁଥାନ୍ତି ଯେ ତାଙ୍କଭଳି ଲୋକ ପକ୍ଷରେ ତା’ ଅସମ୍ଭବ ବୋଲି ଆମର ଧାରଣା ଥିଲା । ତିନୋଟି ବିକଟଦର୍ଶନ ଜୀବ ତାଙ୍କ ପଛେ ପଛେ ପ୍ରାୟ ଦୌଡୁଥାନ୍ତି । ସେଗୁଡ଼ାକ ବାଘୁଆ କଙ୍କଡ଼ା, ଦେହରେ ଧଳା ଓ କାଳିଆ ପଟାପଟା ଚିହ୍ନ । ପ୍ରତ୍ୟେକଟି କଙ୍କଡ଼ା ଆକାରରେ ଗୋଟିଏ ବଡ଼ କୁକୁର ଭଳି । ଭାଗ୍ୟକୁ ସେଗୁଡ଼ାକ ବିଶେଷ କ୍ଷିପ୍ରଗାମୀ ଜୀବ ନୁହନ୍ତି । ମାରାକଟ୍ ବେଦମ୍ ହୋଇପଡ଼ିବା ମାତ୍ରେ ସେମାନେ ତାଙ୍କର ବିକଟ ବୁଢ଼ା ଗୋଡ଼ରେ ତାଙ୍କୁ ଚିମୁଟି ଧରନ୍ତେ । ଆମ ବନ୍ଧୁମାନେ ତାଙ୍କର ଗୋଜିଆ ଦଣ୍ଡା ଉଞ୍ଚାଇ ଦୌଡ଼ିଗଲେ ଓ ମାଣ୍ଡା ତାଙ୍କ ଅଣ୍ଟାପଟିରୁ ଶକ୍ତିଶାଳୀ ବିଜୁଳି ଆଲୁଅ ସେ ବୀଭତ୍ସ ଜନ୍ତୁଗୁଡ଼ାକ ଉପରେ ପକାଇଲାରୁ ସେମାନେ ଜଙ୍ଗଲକୁ ପଶିଗଲେ । ମାରାକଟ୍ ଗୋଟାଏ ପ୍ରବାଳ ସ୍ତୂପ ଉପରେ ବସିପଡ଼ିଲେ । ପରେ ତାଙ୍କଠୁ ଶୁଣିଲି ଯେ ସେ ଗଭୀର ଜଳର ଜଙ୍ଗଲ ଭିତରକୁ ଯାଇଥିଲେ—ତା’ପରେ ଏଇ କାଣ୍ଡ ।

ପାହାଡ଼ ପାର ହେବା ପରେ ଆମେ ଗନ୍ତବ୍ୟ ସ୍ଥାନର ନିକଟବର୍ତ୍ତୀ ହେଲୁ । ବିଭିନ୍ନ ଆକୃତିର ଗମ୍ବୁଜ ଓ ଚୂଡ଼ାର ସାମନାରେ ଧୂସର ସମଭୂମି ପୂର୍ଣ୍ଣ ଜଣାପଡ଼େ । ସେଇ ପ୍ରାଚୀନ ନଗରୀ ରହିଚି ଏହା ତଳେ । ହର୍‌କିଉଲନିୟମ୍ ଯେମିତି ଲାଭା ତଳେ ଓ ପମ୍ପିଆଇ ଯେମିତି ପାଉଁଶଗଦା ତଳେ ପୋତି ହୋଇ ପଡ଼ିଛି ସେମିତି ଏ ମଧ୍ୟ ସିନ୍ଧୁମଳ ତଳେ ପୋତିହୋଇ ପଡ଼ନ୍ତା ଯଦି ଆଶ୍ରୟସଦନର ଲୋକମାନେ ମାଟି କାଟି ଯିବାଆସିବାର ରାସ୍ତା ପ୍ରସ୍ତୁତ କରିନଥାନ୍ତେ । ଏଇ ରାସ୍ତାଟି ବେଶ୍ ଲମ୍ବା । ଢାଲୁ ହୋଇ ଗୋଟାଏ ଚଉଡ଼ା ରାସ୍ତା ପଡ଼ିଚି । ରାସ୍ତାର ଦୁଇପଟରେ ଘର । ଘରର କାନ୍ଥ ସବୁ ସ୍ଥାନେ ସ୍ଥାନେ

ଫାଟିଯାଇଚି, କେଉଁଠ ବା ଭଣ୍ଗୁଡ଼ି ପଡ଼ିଚ, କାରଣ ସେ ସବୁ ଆଶ୍ରୟସଦନ ଭଳି ନିବା ଗାନ୍ଥିନି ହୋଇନାହିଁ । କିନ୍ତୁ ଘର ଭିତର ଆଠହଜାର ବର୍ଷ ପୂର୍ବେ ସମୁଦ୍ର ତଳେ ଧସି ଯିବାଦିନ ଯେମିତି ଥିଲା ଆଜି ମଧ୍ୟ ସେମିତି ଅଛି । ସମୁଦ୍ର ସେମାନଙ୍କୁ ଭିନ୍ନ ଭିନ୍ନ ସ୍ଥାନ ଅନୁସାରେ ଭିନ୍ନ ଭିନ୍ନ ରୂପ ଦେଇଛି କେବଳ–କେଉଁଠି ଅପରୂପ ସୁନ୍ଦର, କେଉଁଠି ବା ଭୟାନକ ବୀଭତ୍ସ । ଆମର ବନ୍ଧୁମାନେ ପ୍ରଥମ କେତେଗୁଡ଼ିଏ ଘର ଶୀଘ୍ର ଅତିକ୍ରମ କରି ପ୍ରାସାଦ ପରି ସୁନ୍ଦର ଓ ବଡ଼ ଗୋଟିଏ କୋଠା ଭିତରକୁ ପ୍ରବେଶକଲେ । ତା'ର ବିରାଟ ବିରାଟ ଖୁମ୍ବ ଓ ଅପୂର୍ବ କାରୁକାର୍ଯ୍ୟ ପୃଥିବୀର ଗୋଟିଏ ମାତ୍ର ସ୍ଥାନ କଥା ମନେପକାଇଦିଏ–ସେ ହେଲା ମିଶରର ନୀଳନଦୀ କୂଳରେ ଲୁକ୍‌ସାଇ ନାମକ ଏକ ସ୍ଥାନ । ସେଠାକାର ବହୁ ପ୍ରାଚୀନ କାର୍ଣ୍ଣାକ ମନ୍ଦିରର ଧ୍ୱଂସାବଶେଷ ଠିକ୍ ଏଇ ଢଙ୍ଗର । କିନ୍ତୁ ସେ ବି ଏତେ ସୁନ୍ଦର ନୁହେଁ । ଅଧା ଆଲୁଅରେ ପ୍ରକାଣ୍ଡ ଘରର ମୋଜାଇକ୍ ଚଟାଣରେ ଦଣ୍ଡାୟମାନ ବଡ଼ ବଡ଼ ମୂର୍ତ୍ତି । ଆମେ ଏ ଘର ସେ ଘର ବୁଲିଲୁ । ଗୋଟିଏ ସାନ ବଖରାର ଚଟାଣ ଇନ୍ଦ୍ରଧନୁ ରଙ୍ଗର ଶାମୁକା ଦ୍ୱାରା ମିନା କରାହୋଇଛି, ଆଲୁଅ ପଡ଼ିବାରୁ ସାତୋଟି ରଙ୍ଗ ଝଲମଲ କରିଉଠିଲା । ବଖରାର ଗୋଟାଏ କୋଣରେ ହଳଦିଆ ରଙ୍ଗର କୌଣସି ଧାତୁ ନିର୍ମିତ ନାନା କାରୁକାର୍ଯ୍ୟ ଖଚିତ ଗୋଟିଏ ମଞ୍ଚ ଓ ଗୋଟିଏ ପଲଙ୍କ । ମନେହୁଏ ଏହା କୌଣସି ରାଜାଙ୍କ ଶୟନ ମନ୍ଦିର ଥିଲା । ଦେଖିଲି ସେଇ ପଲଙ୍କ ପାଖରେ ପଡ଼ିରହିଚି ଗୋଟାଏ କୁତ୍ସିତ କାଳିଆ ସ୍କୁଇଡ଼୍, ତା' ଦେହଟା ଆସ୍ତେ ଆସ୍ତେ ଉଠୁଛି ଓ ପଡୁଚି କେମିତି କୁତ୍ସିତ ଭାବରେ ! ସେଠାରୁ ବାହାରି ସ୍ୱସ୍ତିର ନିଃଶ୍ୱାସ ଛାଡ଼ିଲି । ବାହାରିବା ବାଟରେ ଦେଖିଲି ଗୋଟାଏ ପଟରେ ଏକ ବିଧ୍ୱସ୍ତ ରଙ୍ଗଭୂମି ଓ ଅନ୍ୟ ପଟେ ଗୋଟିଏ ଜେଟି ଯାହାର ଶେଷ ମୁଣ୍ଡରେ ଗୋଟିଏ ବତିଘର । ହୁଏତ ତାହା ଥିଲା ଏକ ବନ୍ଦର ।

## ସାତ

ଏଥର ଫେରିବା ପର୍ବ । ପୁଣି ଆମେ ସମୁଦ୍ର ତଳେ ଚାଲିବାକୁ ଲାଗିଲୁ । ଦିନକ ଭିତରେ ଯେତେ ଆଶ୍ଚର୍ଯ୍ୟ କଥା ଦେଖିଲୁ ସେ ବିଷୟରେ ଭାବୁଥାଉଁ । କିନ୍ତୁ ତଥାପି ଆହୁରି ଏକ ଆଶ୍ଚର୍ଯ୍ୟ କଥା ଦେଖିବା ଯେ ବାକିଥିଲା ତାହା ଆମେ ବା ଆମ ପ୍ରଦର୍ଶକମାନେ କେହି ଜାଣି ନଥିଲୁ । ଆମେ ଆଶ୍ରୟସଦନର ଯେତେବେଳେ ନିକଟବର୍ତ୍ତୀ, ସେତେବେଳେ ହଠାତ୍ ଜଣେ ଉପର ଆଡ଼କୁ ଅଙ୍ଗୁଳି ଦେଖାଇଲେ । ସେଇ ଆଡ଼କୁ ଅନାଇବାରୁ ଦେଖିଲି ଉପର ଘନକୃଷ୍ଣ ଅନ୍ଧକାର ମଧ୍ୟରୁ ଆହୁରି କଳା ପ୍ରକାଣ୍ଡ କ'ଣ ଗୋଟାଏ ପ୍ରବଳ ବେଗରେ ଓହ୍ଲାଇ ଆସୁଛି । ଆହୁରି ନିକଟକୁ ଆସିବାରୁ ଜଣାଗଲା ତାହା ଗୋଟାଏ ପ୍ରକାଣ୍ଡ ମାଛର ମୃତଦେହ । ତା'ର ପେଟ ଫାଟିଯାଇ

ଅନ୍ତନାଡ଼ ବାହାରିପଡ଼ିଚି ଓ ମାଛଟାର ପତନ ବେଗରେ ସେଗୁଡ଼ାକ ପତାକା ଭଳି ଉପରକୁ ଉଡୁଚି । ସେଇଦିନ ଆମେ ଏଇଭଳି ବଡ଼ ବଡ଼ କଙ୍କାଳ ଦେଖିଥିଲୁ । ବର୍ତ୍ତମାନ ସମସ୍ତ ଜନ୍ତୁଟା ବାସ୍ତବିକ କେଡ଼େ ବଡ଼ ତାହାର ଗୋଟାଏ ନମୁନା ଦେଖିଲୁ । ଦେଖୁ ଦେଖୁ ସେଇଟା ଆସି ତଳେ ପଡ଼ିଲା । କାଚ ପୋଷାକ ପିନ୍ଧିଥିବାରୁ ଆମେ ଅବଶ୍ୟ ପତନର ଶବ୍ଦ ଶୁଣିବାକୁ ପାଇଲୁ ନାହିଁ । କେବଳ ଦେଖିଲୁ ସିନ୍ଧୁମଳ ଚାରିଆଡ଼େ ଛିଟିକି ପଡ଼ିଲା, ଠିକ୍ ଯେମିତି କାଦୁଅ ଉପରେ କିଏ ଗୋଟାଏ ପଥର ପକାଇ ଦେଲା । ଦେଖିଲୁ ସେଟା ଗୋଟାଏ ମହମ-ତିମି, ସତୁରି ଫୁଟ ସରିକି ଲମ୍ବା । ସାଗରତଳ ମଣିଷମାନଙ୍କ ଆନନ୍ଦରୁ ବୁଝିଲି ଯେ ତିମିଟାର ମୁଣ୍ଡରେ ମହମ ଓ ଦେହର ଚର୍ବି ସେମାନଙ୍କ କାମରେ ଲାଗିବ । ଯାହାହେଉ ସେଦିନ ପାଇଁ ଆମେ ଘର( ? )କୁ ଫେରିଆସିଲୁ–ଅତି କ୍ଳାନ୍ତ ହୋଇ ।

ପୂର୍ବେ ଆମେ ଯେଉଁ ଚିନ୍ତାର ପ୍ରତିଛବି ବା ଚଳଚ୍ଚିତ୍ର ଯାହା କହଦେଖିଥିଲୁ ଓ ଦେଖାଇଥିଲୁ ବି କେତେଦିନ ପରେ ଆଉ ଗୋଟିଏ ସେମିତିକା ବ୍ୟାପାର ହେଲା; କିନ୍ତୁ ଏଥର ଆମେ କେବଳ ଦର୍ଶକ । ଏଇ ଆଶ୍ଚର୍ଯ୍ୟ ଜାତିର ବିଗତ ଇତିହାସ ଆମେ ଦେଖିଲୁ । ମନେହେଲା ତାହା ଏଠାର କୌଣସି ଗୋଟାଏ ଧର୍ମାନୁଷ୍ଠାନର ଅଙ୍ଗ । ହୁଏତ ପ୍ରତି ବର୍ଷ ସେହି ଉପଲକ୍ଷ୍ୟରେ ସେମାନେ ନିଜର ପୂର୍ବ ଇତିହାସ ଥରେ ଆଉଡ଼ାଇ ନିଅନ୍ତି, ଯେପରିକି ସେମାନେ ଭୁଲି ନ ଯା'ନ୍ତି ସେମାନେ ଅତୀତରେ କ'ଣ ଥିଲେ, ବର୍ତ୍ତମାନ କ'ଣ ହୋଇଛନ୍ତି–ଉଦ୍ଦେଶ୍ୟ ଭବିଷ୍ୟତରେ କ'ଣ ହେବାକୁ ହେବ ତା'ର ସୂତ୍ର ପାଇବା ।

ଯେଉଁ ବିରାଟ ପ୍ରେକ୍ଷାଗୃହର ରୂପେଲି ପର୍ଦ୍ଦା ଉପରେ ଡକ୍‌ଟର ମାରାକଟ୍ ଆମ ଆଗରେ କାହାଣୀ ପ୍ରକାଶ କରିଥିଲେ ସେଇଠିକି ଆମକୁ ନିଆଗଲା ଏବଂ ସମସ୍ତଙ୍କ ସାମନାରେ ବସାଇଦିଆଗଲା । ସମଗ୍ର ଆଟଲାଣ୍ଟିସ୍ ସମାଜ ସେଠି ଉପସ୍ଥିତ । ପ୍ରଥମେ ଗୋଟିଏ ସ୍ତବଗାନ ଭଳି ହେଲା – ଅନେକ କ୍ଷଣଯାଏଁ–ହୁଏତ କୌଣସି ଦେଶପ୍ରେମାତ୍ମକ ସଙ୍ଗୀତ । ତା'ପରେ ଏକ ଅତି ପ୍ରାଚୀନ ଶୁକ୍ଳକେଶ ବୃଦ୍ଧ ଆଗରେ ଆସି ଯୋଗ ବିନ୍ଦୁ (Focus) ପାଖରେ ଛଡ଼ାହେଲେ । ଆରମ୍ଭ ହେଲା ସେହି ପ୍ରାଚୀନ ଜାତିର ଇତିହାସ । ମନେହେଉଥିଲା ଯେମିତି ଗୋଟାଏ ଚମତ୍କାର ଜାକ୍‌ଜମକ୍ ଅଭିନୟ ଦେଖୁଚୁ ସେଇ ଉଜ୍ଜ୍ୱଳ ପର୍ଦ୍ଦା ଉପରେ । ଦର୍ଶକମାନେ ଅସ୍ଫୁଟ ଭାବରେ ମଝିରେ ମଝିରେ 'ଆହା' 'ଅହୋ' କରୁଥାନ୍ତି, କେବେ ବା ରୀତିମତ କାନ୍ଦୁଥାନ୍ତି ।

ପ୍ରଥମ କେଇଟି ଦୃଶ୍ୟରେ ଆମେ ଦେଖିବାକୁ ପାଇଲୁ ସେଇ ପୁରାତନ ମହାଦେଶର ପୂର୍ବ ଗୌରବ । ଛବି ଭଳି ସୁନ୍ଦର ଦେଶ । ସେଥିରେ କେତେ ନଦନଦୀ ଓ ଜଳସେଚନ ନାଳ । ଫସଲଭରା କ୍ଷେତ, ବଣମୟ ସାନ ସାନ ପାହାଡ଼ ଯାହାର ଶାନ୍ତ

ଛାୟା ପଡ଼ିଛି ହ୍ରଦର ଢଳଢ଼ଳ ପାଣିରେ । ସମୁଦ୍ର ତଟରେ ସେଇ ଦେଶର କି ବର୍ଣ୍ଣାଢ଼୍ୟ ରାଜଧାନୀ ! ଘରଗୁଡ଼ିକ ବେଶ୍ ବଡ଼ ବଡ଼, ବନ୍ଦରରେ ଅନେକ ଜାହାଜ । ଆଉ ବନ୍ଦରର ଜେଟି ଉପରେ ବହୁଦେଶ ସମାଗତ କେତେ ପ୍ରକାରର ବାଣିଜ୍ୟ ସାମଗ୍ରୀ । ରାଜଧାନୀ ଘେରି ଉଚ୍ଚ ପ୍ରାଚୀର ଓ ତାକୁ ଘେରି ପରିଖା । ଠିକ୍ ମଝିରେ ଗୋଟିଏ ଦୁର୍ଗ । ସେ ଦୁର୍ଗ ଏଡ଼େ ବିଶାଳ ଓ ଏତେ ଉଚ୍ଚ ତା'ର ଚୂଡ଼ା ଯେ ମନେହୁଏ ରୂପକଥାର କୌଣସି ଦୈତ୍ୟରାଜର ଗଡ଼ ! ଆଉ ସେବକାର ମଣିଷ–ଯାହାକୁ କହନ୍ତି ମଣିଷଭଳି ମଣିଷ । ବୃଦ୍ଧମାନେ ଏମିତି ଜ୍ଞାନୀ ଯେ ଦେଖିଲେ ହିଁ ମୁଣ୍ଡ ନଇଁଯାଏ । ଯୋଦ୍ଧାମାନେ ସେମିତି ବୀର । ପୁରୋହିତମାନେ ଋଷି ଭଳି ! ନାରୀମାନେ ଯେମିତି ସୁନ୍ଦରୀ ସେମିତି ତାଙ୍କର ବୁଦ୍ଧିଦୀପ୍ତ ଉଜ୍ଜ୍ୱଳ ମୁହଁ । ଯେଉଁ ଦେଶର ମଣିଷ ଏମିତି – ସେ ଦେଶର ଶିଶୁମାନେ ଯେ ଫୁଲଭଳି ସୁନ୍ଦର ହେବେ ତା' ତ ସହଜରେ ବୁଝିପାରିଥିବ ।

ତା'ପରେ ଆସିଲା ଆଉ ଏକ ରକମର ଛବି । ସେହି ଦେବତୁଲ୍ୟ ଜାତି କ୍ରମେ ହୋଇଉଠିଲେ ଲୋଭୀ । ତାଙ୍କଠୁ ଦୁର୍ବଳ ଅସହାୟ ଜାତି ଉପରେ ଅତ୍ୟାଚାର କରି ଧନରତ୍ନ ଲୁଣ୍ଠନ କରି ଆଣିଲେ । କିନ୍ତୁ ଏଇ ଅଧର୍ମ ବିତ୍ତରେ ସେମାନେ ଯେତେ ବିଭବବାନ୍ ହେଲେ ମନୁଷ୍ୟତ୍ୱର ମାପକାଠିରେ ସେମାନେ ଓହ୍ଲାଇ ଯିବାକୁ ଲାଗିଲେ ସେତିକି ତଳକୁ । ଶେଷରେ ନିଜ ମଧ୍ୟରେ ବି ଯେଉଁମାନେ ଦୁର୍ବଳ ତାଙ୍କ ଉପରେ ଅନ୍ୟାୟ ଆରମ୍ଭ ହେଲା । ଏହିପରି ଭାବରେ କ୍ରମଶଃ ଦଳେ ହେଲେ ଅତିରିକ୍ତ ଧନୀ ଏବଂ ଅନ୍ୟ ଦଳେ ହେଲେ ଅତ୍ୟନ୍ତ ଦରିଦ୍ର । ଧନୀମାନେ ଆରାମ ଓ ଆୟସରେ ନିଜକୁ ଭସାଇଦେବା ଫଳରେ କ୍ରମେ ସେମାନଙ୍କର ପୂର୍ବ ତେଜ ରହିଲା ନାହିଁ । ସେତିକି ନୁହଁ, ସହଜ ଓ ସରଳ ଆମୋଦ ସେମାନଙ୍କୁ ସୁଖ ଦେଲା ନାହିଁ । ସୁଖର ସନ୍ଧାନରେ ସେମାନେ ନାନା ପ୍ରକାର ଆମୋଦରେ ଅନେକ ଅର୍ଥ ବ୍ୟୟ କରିବାକୁ ଲାଗିଲେ । ଏମିତି କି ନିଷ୍ଠୁର ଭାବରେ ମଣିଷ ମଣିଷ ଭିତରେ, ପଶୁ ପଶୁ ଭିତରେ ବା ମଣିଷ ପଶୁ ଭିତରେ ଲଢ଼େଇ ଭିଆଇ ମଜା ଦେଖିଲେ । ଏକ ପକ୍ଷ ନ ମରିବା ପର୍ଯ୍ୟନ୍ତ ସେ ଲଢ଼େଇ ଥମୁ ନ ଥିଲା । ସୁଖ ଆଶାରେ କେବଳ ଅଧିକରୁ ଅଧିକ ଉଦ୍‌ଭଟ ଆମୋଦରେ ମାତିଲେ, କିନ୍ତୁ ତଥାପି କୌଣସିଥିରେ ସୁଖ ପାଇଲେ ନାହିଁ ।

ଏଥର ଏକ ନୂତନ ସୁର ବାଜିଲା । ସେ ଅବସ୍ଥାରେ ବି ଏମିତି ଅନେକ ଜ୍ଞାନୀଲୋକ ଥିଲେ ଯେଉଁମାନେ ଜାତିର ଏଇ ପ୍ରଚଣ୍ଡ ଭୁଲ ବୁଝିପାରିଥିଲେ । ସେମାନେ ଅବିଶ୍ରାନ୍ତ ଭାବରେ ବୁଝାଇବାକୁ ଲାଗିଲେ ଯେ ଜୀବନର ଧାରା ନ ବଦଳାଇଲେ ପୁଣି ସେଇ ସହଜ ଆନନ୍ଦ ଫେରାଇ ନ ଆଣିପାରିଲେ, କେବଳ ବୃଥା ସୁଖର ସନ୍ଧାନରେ ଶେଷରେ ସମସ୍ତ ଜାତି ଧ୍ୱଂସ ମୁହଁରେ ପଡ଼ିବ । କିନ୍ତୁ କେହି ତାଙ୍କ କଥାରେ କାନ ଦେଲେ

ନାହିଁ । ସେହି ବେଖ୍ୟାଲ ନାମକ ଦେବତା ମନ୍ଦିରର ପୁରୋହିତମାନେ–ଯେଉଁମାନେ କେବଳ ବାହ୍ୟ ଆଚାର ବିଚାର କ୍ରିୟାକର୍ମକୁ ଧର୍ମ ସ୍ଥାନରେ ବସାଇଥିଲେ–ନିଜ ଦଳରେ ଆହୁରି ଲୋକ ଜୁଟାଇ ଉକ୍ତ ଜ୍ଞାନୀମାନଙ୍କୁ ବିଦ୍ରୂପ କରିବାକୁ ଲାଗିଲେ । ଶେଷରେ ଜ୍ଞାନୀମାନେ ହତାଶ ହୋଇ ସବୁ ଚେଷ୍ଟା ଛାଡ଼ିଦେଲେ ।

ତା'ପରେ ଦେଖିଲି ଜଣେ ମହାଜ୍ଞନୀଙ୍କୁ । ଦେହ ଓ ମନରେ ତାଙ୍କର ଅସାମାନ୍ୟ ଶକ୍ତି । ସେ ଅନ୍ୟାନ୍ୟ ଜ୍ଞାନୀଙ୍କର ନେତା ହେଲେ । ତାଙ୍କର ଧନ ଓ ପ୍ରତିପତ୍ତି ଅବଶ୍ୟ ଥିଲା, କିନ୍ତୁ ତା'ଛଡ଼ା ଏପରି କୌଣସି ଶକ୍ତି ବି ଥିଲା ଯା ହୁଏତ ଅପାର୍ଥିବ । ଦେଶର ବଡ଼ ବଡ଼ ଜ୍ଞାନୀମାନଙ୍କୁ ନେଇ ସେ ଏକ ବିରାଟ ଶରଣାଳୟ ବା ଆଶ୍ରୟସଦନ ନିର୍ମାଣକାର୍ଯ୍ୟ ଆରମ୍ଭ କଲେ । ବିଧାତାଙ୍କ ରୋଷ ଭଳି କି ବିପଦ ଆସୁଛି ତା ନିଶ୍ଚୟ ସେ ଆଗରୁ ଜାଣିପାରିଥିଲେ । ବହୁ ଶ୍ରମିକ ସେଇ କାମରେ ଲାଗିଥିବା ଦେଖିଲୁ । କିନ୍ତୁ ତଥାପି ଲୋକଙ୍କ ଚେତନା ଆସିଲା ନାହିଁ । ଏଇ ବିରାଟ ପରିକଳ୍ପନାକୁ ଥଟ୍ଟା ପରିହାସ କରିବାକୁ ବି ସେମାନଙ୍କୁ ବାଧୁ ନ ଥିଲା । ଏପରି ଯେ ଘଟିବ ତା' ମଧ୍ୟ ସେ ମହାପୁରୁଷ ଜାଣିଥିଲେ । ଶରଣାଳୟ ନିର୍ମାଣ ଶେଷ ହେବା ପରେ କବାଟସବୁ ପରୀକ୍ଷା କରି ଦେଖାଗଲା ବୁନ୍ଦାଏ ପାଣି ତା' ଭିତରେ ପଶି ପାରିବ ନାହିଁ । ସେତେବେଳେ ସେ ନିଜ ପରିବାର, ପରିଜନ, ବନ୍ଧୁବାନ୍ଧବ ଓ ଅନୁଗତମାନଙ୍କ ସହ ତା' ଭିତରେ ନିୟତିର ପ୍ରତୀକ୍ଷାରେ ରହିଲେ ।

ନିୟତି ଆସିଲା । ଛବିରେ ବି ତା'ର ଭୟଙ୍କର ରୂପ ଦେଖି ଆମେ ଶିହରି ଉଠିଲୁ । ପ୍ରଥମେ ଦେଖିଲୁ ସମୁଦ୍ର ଭିତରୁ ହଠାତ୍ ଯେପରି ଗୋଟାଏ ବିଶାଳ ପାଣିର ପାହାଡ଼ ଉଠିଲା ଅନେକ ଉଚ୍ଚକୁ । ତା'ପରେ ସେ ଅଗ୍ରସର ହେଲା– ଢେଉ ଯେମିତି ଓଲଟପାଲଟ ହୋଇଚାଲେ । ମାଇଲ ପରେ ମାଇଲ ଏମିତି ଚାଲିଲା ସେ ପାହାଡ଼ ଭଳି ଢେଉ । ତା' ମୁଣ୍ଡରେ ଫେଣର ମୁକୁଟ ଝକମକ କରୁଥାଏ । ତା' ଭିତରେ କ'ଣ ଦୁଇଟା ଓଲଟ ପାଲଟ ଖାଇ ଆସୁଥିଲା । ନିକଟକୁ ଆସିବାରୁ ଦେଖିଲୁ ଦୁଇଟି ଜାହାଜ । ତା'ପରେ ସେଇ ଜଳ ପାହାଡ଼ ସମୁଦ୍ରତଟସ୍ଥ ସେଇ ସୁନ୍ଦର ରାଜଧାନୀ ଉପରେ ଭାଙ୍ଗି ପଡ଼ିଲା ଓ ସବୁ ଭସାଇ ନେଇ ଚାଲିଲା । ସହର ବାହାରେ ଶରଣାଳୟ, ସେଠିକି ଯିବାକୁ ଆଉ ସମୟ ନଥିଲା । ସହରର ସମସ୍ତ ଲୋକ ଘରର ଛାତମାନଙ୍କ ଉପରେ ଜମା ହୋଇଥିଲେ । ସାକ୍ଷାତ ମୃତ୍ୟୁ ଭଳି ସେହି ଢେଉମାନ ଆସିବା ଦେଖି ଆତଙ୍କରେ ପାଗଳ ଭଳି କେହି ପ୍ରଳାପ କରୁଥାନ୍ତି; କେହି ବା ନିଜ ହାତ କାମୁଡୁଥାନ୍ତି । କାହାରି ବା କଥା କହିବାର ଶକ୍ତ ଲୋପପାଇଚି, ସମସ୍ତଙ୍କ ପ୍ରାଣ ଯେମିତି ଦୁଇଟି ବିସ୍ଫାରିତ ଆଖି ବାଟେ ବାହାରି ଆସିବାକୁ ଚାହୁଁଛି । ଯେଉଁମାନେ ମହାପୁରୁଷଙ୍କ କଥାରେ ହସୁଥିଲେ, ସେଇମାନେ ହିଁ ଚିତ୍କାର କରି ଭଗବାନଙ୍କୁ ଡାକୁଥାନ୍ତି ବଞ୍ଚିବାର

ଶେଷ ଚେଷ୍ଟା ସ୍ୱରୂପ । କିନ୍ତୁ ହାୟ, ବିଧି ବର୍ତ୍ତମାନ ବାମ । ସେଇ ପର୍ବତାକାର ଢେଉର ଧକ୍କାରେ ଘରସବୁ ଝଡ଼ ମୁହଁରେ ବେତବୁଦା ଭଳି ନଇଁପଡ଼ିଲେ । ଏଣେ ହଜାର ହଜାର ଲୋକ ଦୌଡ଼ୁଥାନ୍ତି ସହର ମଧ୍ୟସ୍ଥିତ ସେଇ ଦୁର୍ଗକୁ, କାରଣ ତାହା ବହୁ ଉଚ୍ଚରେ ଅବସ୍ଥିତ । ମଣିଷର କଳା କଳା ମୁଣ୍ଡରେ ଦୁର୍ଗର ପ୍ରାକାରପୂର୍ଣ୍ଣ ହୋଇଗଲା । ଏତିକିବେଳେ ଦୁର୍ଗ ହଠାତ୍ ଦବିଯିବାକୁ ଲାଗିଲା । ଚାରିଆଡ଼େ ସବୁ ଦବିଯିବାକୁ ଲାଗିଲା । ପୃଥିବୀ ବୁକୁର କୌଣସି ଫାଟ ଭିତର ଦେଇ ସେଇ ଉନ୍ନତ ଜଳସ୍ରୋତ ଯାଇ ପହଞ୍ଚିଛି ପୃଥିବୀର ଅନ୍ତଃସ୍ଥଳରେ, ଆଉ ସେଠିକାର ଚିରନ୍ତନ ଅଗ୍ନିରେ ବାଷ୍ପ ହୋଇ ବାହାରି ଆସିବାକୁ ଚାହୁଁଚି । ତାହାରି ଦାଉରେ ସମସ୍ତ ଦେଶର ଭିତ୍ତଭୂମି ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା । ଆମ ଆଖି ସାମନାରେ ସେଇ ସୁନ୍ଦର ସହର ପାତାଳରେ ପ୍ରବେଶ କରିବାକୁ ଲାଗିଲା । ପର୍ଦ୍ଦାରେ ଏହି ଭୀଷଣ ଦୃଶ୍ୟ ଦେଖି ଆମେ ଆତଙ୍କରେ ଚିତ୍କାର କରି ଉଠିଲୁ । ବନ୍ଦରର ଜେଟି ଦୁଇଖଣ୍ଡ ହୋଇ କେଉଁଠି ତଳେଇଗଲା । କୋଠାବାଡ଼ି ସେଇ ଢେଉର ଧକ୍କାରେ ଭାଙ୍ଗି ଭୂମିସାତ୍ ହେଲା । ଘରର ଛାତ ସବୁ ମନେହେଲା ଜଳମଗ୍ନ ପାହାଡ଼ର ଧାଡ଼ି । କଚାଡ଼ି ହୋଇ ପଡୁଥିବା ପାଣିର ଛିଡ଼କି ଉଠୁଥିବା ଫେଣ ଦିଶୁଥାଏ ଯେମିତି ସ୍ତର ସ୍ତର ହୋଇ ସଜାହୋଇଛି । ଟିକିଏ ପରେ ତା' ମଧ୍ୟ ରହିଲା ନାହିଁ । କେବଳ ସେହି ଦୁର୍ଗ ଗୋଟାଏ ବିଶାଳ ଜାହାଜ ଭଳି ସମୁଦ୍ରର ପ୍ରଳୟ ତାଣ୍ଡବ ମଧ୍ୟରେ ରହିଥିଲା । ତା'ପରେ ହଠାତ୍ ଢଳିପଡ଼ି ସେ ବି ପୃଥିବୀର ଅତଳ ଗହ୍ୱରରେ ଲୁପ୍ତ ହୋଇଗଲା । ଶେଷ ମୁହୂର୍ତ୍ତରେ ଦେଖାଗଲା ଦୁର୍ଗ ଚୂଡ଼ାରେ ଥିବା ଲୋକମାନଙ୍କର ହାତ ଅନ୍ତିମ ଆକୁଳତାରେ ଉର୍ଦ୍ଧ୍ୱକୁ ଉତ୍ତୋଳିତ । ଠିକ୍ ତା'ପରେ... ଜୀବନର ଲେଶ ମାତ୍ର ଚିହ୍ନ ନାହିଁ, ସମସ୍ତ ଦେଶଟା ଉପରେ କେବଳ ସମୁଦ୍ରର କୂଳହୀନ ଜଳରାଶି । ତା'ର ପ୍ରକାଣ୍ଡ ପ୍ରକାଣ୍ଡ ଭଉଁରୀ ଭିତରେ ଘୂରିବୁଲୁଚି ସମୁଦ୍ରର ଅନାବନା ଗଛବୃଛ, ମଣିଷ ପଶୁର ଶବ, ମଣିଷର ନିତି ଲୋଡ଼ା ଜିନିଷ ଓ ଜେଟିରୁ ଭାସିଆସୁଥିବା ମାଲପତ୍ରର ଗଣ୍ଡିରା । କ୍ରମେ ସେ ସବୁ ମିଳାଇଗଲା । ଅନନ୍ତ ସମୁଦ୍ର ପାରଦ ଭଳି ମସୃଣ ଓ ଉଜ୍ଜ୍ୱଳ ହୋଇଗଲା । ଅସ୍ତଗାମୀ ସୂର୍ଯ୍ୟର ଶେଷ ଆଲୋକ ପଡ଼ିଲା ବିଧାତାର ବିଚାରରେ ପାତାଳଗାମୀ ହୋଇଥିବା ଦେଶର ସମାଧି ଉପରେ ।

କାହାଣୀ ଶେଷହେଲା । କେବଳ ଗୋଟିଏ କଥା ଅଜଣା ରହିଗଲା—ଏହି ମର୍ମନ୍ତୁଦ ଘଟଣା ଘଟିଥିଲା କେତେକାଳ ପୂର୍ବେ । ଡା: ମାରାକଟ୍ ତା'ର ଗୋଟାଏ ମୋଟାମୋଟି ଅନ୍ଦାଜ କରିବାର ଉପାୟ ଆବିଷ୍କାର କଲେ । ସେହି ଆଶ୍ରୟ ସଦନର ବଖରାମାନଙ୍କ ଭିତରୁ ଗୋଟିଏ ଖୁବ୍ ପ୍ରକାଣ୍ଡ ଓ ଉଚ୍ଚ ଖିଲାଣଯୁକ୍ତ । ସେଇଠି ପ୍ରଧାନମାନଙ୍କ ମୃତ ଦେହ ସମାଧିସ୍ଥ ହୁଏ । ମିଶରଭଳି ଏଠାରେ ମଧ୍ୟ ମଣିଷ ମରିଗଲେ ତା'ର ଶବକୁ

ମମ୍ମି କରି ରଖିବାର ରୀତି ଚିରକାଳ ପ୍ରଚଳିତ ଅଛି । କାନ୍ଥ ଦେହରେ ବଡ଼ ବଡ଼ ଠଣା ଓ ସେମାନଙ୍କ ଭିତରେ ରହିଛି ଧାଡ଼ି ଧାଡ଼ି ମମ୍ମି । ଶେଷ ମମ୍ମିର ପରବର୍ତ୍ତୀ ଠଣାଟିକୁ ସଗର୍ବେ ଦେଖାଇ ମାଣ୍ଡା କହିଲେ ତାହା ବିଶେଷ କରି ତାଙ୍କ ପାଇଁ ରଖାହୋଇଛି ।

ଅଧ୍ୟାପକ ମାରାକଟ୍ ତାଙ୍କର ପୁରାଦସ୍ତୁର ଅଧ୍ୟାପକୀ ଢଙ୍ଗରେ କହିଲେ, 'ଇଉରୋପର ରାଜାମାନେ ଯିଏ ସେତେବେଳେ ବଞ୍ଚିଥିଲେ ତା'ର ଯଦି ଗୋଟାଏ ହାରାହାରି ହିସାବ ନିଆଯାଏ ତା'ହେଲେ ଦେଖିବା ତାହା ପ୍ରାୟ କୋଡ଼ିଏ ବର୍ଷ । ଏଠି ମଧ୍ୟ ଆମେ ସେଇ ହିସାବ ଯୋଡ଼ିପାରୁ । ସେଥିରେ ବୈଜ୍ଞାନିକ ସୂକ୍ଷ୍ମ ହିସାବ ନ ପାଇଲେ ବି ଗୋଟାଏ ସ୍ଥୂଳ ହିସାବ ପାଇବୁ । ମୁଁ ମମ୍ମିଗୁଡ଼ିକ ଗଣି ଦେଖିଛି ସର୍ବମୋଟ ଚାରିଶହଟି ।'

'ତା' ହେଲେ ଆଠହଜାର ବର୍ଷ ହେଲା ?'

'ଠିକ୍, ଆମେ ସ୍ୱଚ୍ଛନ୍ଦରେ କହିପାରୁ ଯେ ଅନ୍ତତଃ ଆଠହଜାର ବର୍ଷ ପୂର୍ବର ଏକ ବିରାଟ ପ୍ରାକୃତିକ ବିପର୍ଯ୍ୟୟର ଛବି ଆମେ ଦେଖି ଆସିଲୁ । ହେଲେ ଯେଉଁ ସଭ୍ୟତାର ଚରମ ଅବସ୍ଥା ଆମେ ସେ ଛବିରେ ଦେଖିଲୁ ତାହା ଗଢ଼ିବାକୁ ଅବଶ୍ୟ ଆହୁରି କେତେ ହଜାର ବର୍ଷ ଲାଗିଥିବ ।'

ଶେଷକଲେ ଏତିକି କହି– 'ଆମର ଏଇ ବିଚିତ୍ର ଅଭିଜ୍ଞତା ଦ୍ୱାରା ଆମେ ମାନବ ଇତିହାସର ଦିଗ୍‌ବଳୟ ଯେପରି ପ୍ରସାରିତ କରିପାରିଚୁ ଆଜି ପର୍ଯ୍ୟନ୍ତ ସେହିପରି କେହି କରିପାରିନାହାନ୍ତି ।'

## ଆଠ

ଗୋଟାକ ପରେ ଗୋଟାଏ ଆଶ୍ଚର୍ଯ୍ୟ ଓ ଅଦ୍ଭୁତ କଥା ଦେଖି ଦେଖି ଆମର ମନେ ହୋଇଥିଲା ଅନ୍ୟ କୌଣସି ନୂଆ କଥା ଆମକୁ ଆଉ ଆଶ୍ଚର୍ଯ୍ୟ କରିପାରିବ ନାହିଁ । ତଥାପି କିଛିଦିନ ପରେ–ଆମ ହିସାବରେ ପ୍ରାୟ ମାସକ ପରେ–ପୁଣି ଗୋଟିଏ ଘଟନାରେ ଆମର ମନେହେଲା ଏହା ବୋଧହୁଏ ସବୁଠାରୁ ଆଶ୍ଚର୍ଯ୍ୟ ବ୍ୟାପାର ।

ସେତେବେଳକୁ ସେଇ ଆଶ୍ଚର୍ଯ୍ୟ ଦେଶରେ ଆମେ ନିଜକୁ ଖାପ ଖୁଆଇ ନେଇଥାଉ । ସାଧାରଣ ବିଶ୍ରାମାଗାର ଓ ପ୍ରମୋଦଭବନ ସବୁ କେଉଁଠି ତା'ବି ଜାଣିନେଇଥାଉ । ସେ ସବୁର ଗୀତବାଦ୍ୟ ଆସରକୁ ଯାଉଁ । ସେମାନଙ୍କ ନାଟ୍ୟାଭିନୟ ମଧ୍ୟ ଦେଖୁଁ, କଥୋପକଥନ ବୁଝି ନ ପାରିଲେ ବି ସେମାନଙ୍କ ଅଙ୍ଗଭଙ୍ଗୀ ଦ୍ୱାରା ସବୁ ବୁଝିପାରୁ । ମୋଟମୋଟି ଆମେ ସେଠାକାର ସମାଜ ସହିତ ମିଶିଯାଇଥାଉ । ଅନେକ ପରିବାର ସହିତ ଆମର ଆଳାପ ପରିଚୟ ହୋଇଥାଏ, ଆମେ ତାଙ୍କ ଘରକୁ ଯାଉ । ସେ ଜାତିର ଗୋଟିଏ ଝିଅ ମୋନା ବିଷୟରେ ଆଗରୁ କହିଚି । ସେମାନେ ମୋତେ ଏତେ ଆପଣାର କରିଥିଲେ ଯେ, ପ୍ରକୃତରେ ମୋର ଧାରଣା ହେଲା ଯେ ଜାତି ବା

ଭାଷା ପ୍ରଭେଦ କିଛି ନୁହଁ, ମଣିଷ ମଣିଷ ଭିତରେ ବାସ୍ତବିକ କୌଣସି ପ୍ରଭେଦ ନାହିଁ, ସମସ୍ତେ ଏକ । ଆଉ ମୋଟା କଥା କହିଲେ କହିବି ସୁପ୍ରାଚୀନ ଆଟଲାଣ୍ଟିକ୍ ଓ ଆଧୁନିକ ଆମେରିକା ଭିତରେ ପାର୍ଥକ୍ୟ ଅତି ସାମାନ୍ୟ । ଆମେରିକାର କୌଣସି କଲେଜ ଝିଅ ଯେଉଁଥିରେ ଖୁସି ହୁଏ ଠିକ୍ ସେଇଥିରେ ଖୁସି ହୁଏ ମୋର ଏଇ ପାତାଳପୁରୀର ରାଜକନ୍ୟା ।

କିନ୍ତୁ ବକ୍ତବ୍ୟକୁ ଫେରିଆସେ । ଦିନେ ସ୍କାନ୍‌ଲନ୍ ଖବର ଆଣିଲା ଯେ ଗୋଟାଏ କିଛି ଗୁରୁତର ବ୍ୟାପାର ଘଟିଯାଇଚି । କହିଲା, 'ଏଇ ଧରନ୍ତୁ, ଏମାନଙ୍କ ଭିତରୁ ଜଣେ ଏହିକ୍ଷଣି ବାହାରୁ ଆସିଲା । ସେ କ'ଣ ଦେଖିଲା କେଜାଣି ଏମିତି ଉତ୍ତେଜିତ ହୋଇଥିଲା ଯେ ବାଉଳାରେ ତା'ର କାଚ ମୁଖାଟି ଖୋଲିବାକୁ ଭୁଲିଯାଇଥିଲା । ଭିତରେ କେଇ ମିନିଟ୍ ପାଟି କରିବା ପରେ ତା'ର ଖିଆଲ ହେଲା ଯେ ତା' କଥା କେହି ଶୁଣିପାରୁ ନାହାନ୍ତି । ସେଟା ବାହାର କରି ବେଦମ ହେବା ପର୍ଯ୍ୟନ୍ତ କଅଣ ସବୁ ବକି ଚାଲିଲା । ବର୍ତ୍ତମାନ ସମସ୍ତେ ତା' ସହିତ ଯାଉଛନ୍ତି ବାହାରକୁ ଯିବା ବାଟଘରକୁ । ଆମେ ବି ଗଲେ କେମିତି ହୁଅନ୍ତା ?

ସମସ୍ତଙ୍କ ସାଙ୍ଗରେ ଆମେ ବି ବାରନ୍ଦା ଧରି ଦୌଡ଼ୁ ଦୌଡ଼ୁ ବାଟଘରେ ପହଞ୍ଚିଲୁ, ତା'ପରେ ସେଠୁ ସମୁଦ୍ର ଚଟାଣରେ । ତେବେ ବି ଦୌଡ଼ିବାର ଶେଷ ନାହିଁ । ସେମାନଙ୍କ ସାଙ୍ଗରେ ତାଳ ମିଳାଇ ଅବଶ୍ୟ ଦୌଡ଼ିପାରୁନଥିଲୁ, କିନ୍ତୁ ସେମାନଙ୍କ ହାତରେ ବିଜୁଳିବତି ଥିବାରୁ ପଛରେ ପଡ଼ିଗଲେ ବି ତାହା ଦେଖି ଦେଖି ଆମେ ତାଙ୍କ ପିଛା ଦୌଡ଼ୁଥାଉ । ଆଗ ପରି ଏଥର ବି ଆମେ ଆଗ୍ନେୟ-ଶିଳା ପାହାଡ଼ ପାଖ ଦେଇ ଯାଉଥିଲୁ । ଗୋଟାଏ ଜାଗାରେ ଆସି ଦେଖିଲୁ ଗୋଟାଏ ପାହାଡ଼ ଦେହରେ ସିଡ଼ି ଉପରକୁ ଉଠି ଯାଇଚି । ସେଇ ସିଡ଼ି ବାଟେ ଯାଇ ଆମେ ପାହାଡ଼ ଉପରକୁ ଗଲୁ । ଉପରଟା ଆବୁଡ଼ା ଖାବୁଡ଼ା—କେଉଁଠି ଛୁଞ୍ଚୁମୁନିଆ ଚୂଡ଼ା ତ କେଉଁଠି ଗଭୀର ଖାତ । ପ୍ରାଚୀନ କାଳର ଆଗ୍ନେୟ ଉତ୍ପାତର ଲାଭା ଜମି ଏଇ ପାହାଡ଼ର ସୃଷ୍ଟି । ତା'ରି ଭିତରେ ଗୋଟାଏ ଜାଗା ବେଶ୍ ସମତଳ । ତା' ମଝିରେ ଗୋଟାଏ ବସ୍ତୁ ପଡ଼ିଥିଲା ଯାହା ଦେଖି ଆମ ଦମ୍ ବନ୍ଦ ହୋଇଗଲା । ଆମ ସାଥୀମାନଙ୍କ ମୁହଁକୁ ଚାହିଁ ବୁଝିଲୁ ସେମାନଙ୍କର ମଧ୍ୟ ସେଇ ଅବସ୍ଥା ।

ସମୁଦ୍ର ପଙ୍କ ମଧ୍ୟରେ ଅଧା ପଡ଼ିରହିଛି ଗୋଟାଏ ଛୋଟ ଜାହାଜ । ପଡ଼ିଚି ଅଣେଇ ହୋଇ, ଚୁଙ୍ଗାଟା ଭାଙ୍ଗି ଝୁଲୁଚି । ବଡ଼ ଅଦ୍ଭୁତ ଦିଶୁଥିଲା ଜାହାଜଟା ଏଇ ଅବସ୍ଥାରେ । ସାମନାପଟ ମାସ୍ତୁଲଟାରୁ କିଛି ଅଂଶ କଟିଯାଇଥିବାରୁ ସେଟା ଅନେକ ସାନ ଦିଶୁଥାଏ । ଏସବୁ ଛାଡ଼ିଦେଲେ ଜାହାଜଟି ଦେଖି ମନେହେଉଥିଲା ଯେମିତି ଗୋଟିଏ ନୂଆ ଜାହାଜ କାରଖାନାରୁ ବାହାରିଚି—ସେମିତି ପରିଷ୍କାର ଚକ୍‌ଚକ୍ ଦିଶୁଥାଏ ।

ତା' ପାଖକୁ ଗଲୁ । ଦେଖିଲୁ ସେଇଟି ଜାହାଜର ପଛପଟ । ନା' ଲେଖାଥାଏ 'ଷ୍ଟ୍ରାର୍ଟଫୋର୍ଡ୍, ଲଣ୍ଡନ' । ମନ ଯେ ଆମର କ'ଣ ହୋଇଗଲା ବୁଝିପାରୁଥିବ । ଆମ ଜାହାଜ ଆମ ପଛେ ପଛେ 'ମାରାକଟ୍ ଡୀପ୍'ରେ ହାଜର ।

ବିସ୍ମୟର ପ୍ରଥମ ଅବସ୍ଥା କଟିଯିବା ପରେ ଅବଶ୍ୟ ବ୍ୟାପାରଟା ସେତେ ଦୁର୍ବୋଧ ରହିଲା ନାହିଁ । କ୍ରମେ କ୍ରମେ ସବୁ ମନେପଡ଼ିଲା—ବ୍ୟାରୋମିଟର ପାରଦ ତଳକୁ ଖସିଯାଉଚି, ନରଓ୍ୱେ ଜାହାଜର ଅଝାଳ ସବୁ ଓହ୍ଲାଇ ଦିଆଯାଇଚି, ଦିଗନ୍ତରେ ଘନୀଭୂତ ହେଉଚ ଖଣ୍ଡେ କଳା ମେଘ ! ନିଶ୍ଚୟ ଗୋଟାଏ ପ୍ରବଳ ଝଡ଼ ହୋଇଥିଲା ଏବଂ ବିଚାରା ଷ୍ଟ୍ରାଟ୍‌ଫୋର୍ଡ୍‌କୁ ଓଲଟାଇ ଦେଇଥିଲା । ଯେତେବେଳେ ଦେଖିଲି ଷ୍ଟ୍ରାଟ୍‌ଫୋର୍ଡ୍ ପଛେ ପଛେ ଜୀବନରକ୍ଷୀ ଡଙ୍ଗା ସବୁ ଗୋଟାକ ପରେ ଗୋଟାଏ ତଳ ଧରିଲେ ସେତେବେଳେ ବୁଝିବାକୁ ବାକି ରହିଲା ନାହିଁ ଯେ ସେସବୁକୁ ଜାହାଜରୁ ଓହ୍ଲାଇ ନେବାର ସମୟ ମିଳିନଥିଲା ଓ ଜାହାଜର ଗୋଟିଏ ଲୋକ ବି ବଞ୍ଚିପାରିନାହିଁ । ଯେଉଁ ଓଳମ-ତାରରେ ମୁଁ ମୋର ରୁମାଲଟି ବାନ୍ଧିଦେଇଥିଲି ହୁଏତ ସେ ତାହାକୁ ଓଟାରି ଉଠାଇବା ସଙ୍ଗେ ସଙ୍ଗେ ଜାହାଜଟି ଓଲଟି ପଡ଼ିଛି । ଆଉ, ଓଟାରି ନେଇପାରିଥିଲେ ବା କ'ଣ ହୁଅନ୍ତା ସେଇ ପ୍ରବଳ ଝଡ଼ରେ କ'ଣ ଗୋଟାଏ ବି ଡଙ୍ଗା ରହିପାରିଥାନ୍ତା ? ଆମେ ବଞ୍ଚିଗଲୁ, କିନ୍ତୁ ଆମେ ମରିଯାଇଚୁ ଭାବି ଯେଉଁମାନେ ଅସ୍ଥିର ହୋଇଥିଲେ ସେମାନେ ମଲେ । ଅଦୃଷ୍ଟର କି ଅଦ୍ଭୁତ ପରିହାସ !

କ୍ୟାପ୍‌ଟେନ୍ ହାଓ୍ୱିୟି ସେତେବେଳେ ବି ତାଙ୍କର ରେଲିଂ ବେଷ୍ଟିତ ଆଦେଶ ଦେବା ସ୍ଥଳରେ—ଯାହାକୁ କହନ୍ତି ବ୍ରିଜ୍—ତା' ଉପରେ ଛିଡ଼ାହୋଇଛନ୍ତି, ନିଷ୍ପ୍ରାଣ ଅବଶ ହାତରେ ରେଲିଂକୁ ଦୃଢ଼ଭାବରେ ଧରିଛନ୍ତି । ସେ ଓ ଯନ୍ତ୍ରାଗାରର ତିନିଜଣ ଷ୍ଟୋକର୍ ବା ଫାୟାରମ୍ୟାନ୍ ମୋଟ ଏଇ ଚାରିଜଣଙ୍କ ଦେହ ଜାହାଜ ଭିତରୁ ମିଳିଲା । ଆମ ଇଚ୍ଛାନୁଯାୟୀ ଦେହଗୁଡ଼ିକୁ ସିନ୍ଧୁମଳ ତଳେ କବର ଦିଆଗଲା । କବର ଉପରେ ସଜାଇ ଦିଆଗଲା ସମୁଦ୍ର ଫୁଲର ମାଳା । ଏତକର ଟିକିନିଖି ବର୍ଣ୍ଣନା ଦେଲି ଏହି ଆଶାରେ ଯେ ପୃଥିବୀର ମଣିଷ ଆଖିରେ କେବେ ଯଦି ପଡ଼େ ତା'ହେଲେ ଶ୍ରୀମତୀ ହାଓ୍ୱିୟି ତାଙ୍କ ଶୋକରେ କିଛି ସାନ୍ତ୍ୱନା ପାଇବେ । ଷ୍ଟୋକର୍ ତିନିଜଣଙ୍କ ନାଁ ଆମେ ଜାଣିନଥିଲୁ ।

ଆମେ ଏଇ କାମରେ ବ୍ୟସ୍ତଥିବା ବେଳେ ଆଟଲାଣ୍ଟୀୟମାନେ ଜାହାଜ ଉପରକୁ ଉଠିଥାନ୍ତି । ତାଙ୍କ ଭାବଭଙ୍ଗୀରୁ ମନେହେଉଥାଏ ଏଇ ପ୍ରଥମ ଥର ପାଇଁ ଏକ ଆଧୁନିକ ଜାହାଜ ସମୁଦ୍ରତଳେ ତାଙ୍କ ପାଖରେ ପହଞ୍ଚିଛି । ପରେ ଆମେ ଜାଣିଲୁ ଯେ କାଚଗୋଲକ ଭିତରର ଅମ୍ଳଜାନ ତିଆରି କରିବାର ଯନ୍ତ୍ର ଥରକରେ କେତେଘଣ୍ଟାରୁ ବେଶୀ କାମ ଦିଏ ନାହିଁ – ତା'ପରେ ତାକୁ ପୁଣି ଚାର୍ଜ କରାଇ ନେବାକୁ ପଡ଼େ ବ୍ୟାଟେରି ଭଳି । ଦେଖିଲି

ସେମାନେ ଟିକିଏ ବି ସମୟ ନଷ୍ଟ ନ କରି ଜାହାଜଟିକୁ ଭାଙ୍ଗିବାକୁ ଆରମ୍ଭ କରିଦେଲେ– ସେମାନଙ୍କ ବ୍ୟବହାରୋପଯୋଗୀ ଯାହା ପାଇବେ ନେଇ ଯିବେ । କାର୍ଯ୍ୟଟି ସାମାନ୍ୟ ନୁହେଁ, ଆଜି ପର୍ଯ୍ୟନ୍ତ ସେ କାର୍ଯ୍ୟ ଶେଷ ହୋଇନି । ଆମେ ଆମ ଜାହାଜସ୍ଥ କ୍ୟାବିନ ଭିତରକୁ ଯାଇ ଯେଉଁସବୁ ଲୁଗାପଟା ବହିପତ୍ର ସେବେ ବି ନଷ୍ଟ ହୋଇନଥାଏ ସେ ସବୁ ନେଇଆସିଲୁ ।

ଯେଉଁସବୁ ଜିନିଷ ଆଣିଲୁ ତା' ଭିତରେ ଜାହାଜର ଦିନପଞ୍ଜୀଟି (log-book) ବି ଥିଲା । ତା'ର ଶେଷ ଲେଖାଟି ଏଇ ପ୍ରକାର–

'୩ ଅକ୍‌ଟୋବର – ନିର୍ଭୀକ ଓ ଦୁଃସାହସୀ ଅଭିଯାତ୍ରୀ ତିନିଜଣ ଆଜି ମୋ ଇଚ୍ଛା ଓ ପରାମର୍ଶ ବିରୁଦ୍ଧରେ ତାଙ୍କ ଯନ୍ତ୍ରକୁ ଅବଲମ୍ବନ କରି ସମୁଦ୍ରତଳକୁ ଓହ୍ଲାଇଥିଲେ ଏବଂ ଯାହା ମୁଁ ଆଶଙ୍କା କରିଥିଲି ତାହାହିଁ ଘଟିଲା । ଈଶ୍ୱର ତାଙ୍କର ଆତ୍ମାର ଶାନ୍ତିବିଧାନ କରନ୍ତୁ । ସେମାନେ ସକାଳ ଏଗାରଟା ବେଳେ ଓହ୍ଲାଇଥିଲେ । ସେମାନଙ୍କୁ ଓହ୍ଲାଇବାର ଅନୁମତି ଦେବି କି ନା ବୁଝିପାରୁନଥିଲି – କାରଣ ମନେହେଉଥିଲା ଝଡ଼ ଆସିବ । ବର୍ତ୍ତମାନ ଭାବୁଛି ଆଶଙ୍କା ଯଦି କରୁଥିଲି କାହିଁକି ମନା ନ କଲି । କିନ୍ତୁ ମନାକରିଥିଲେ ବି ସେମାନଙ୍କୁ ସାମୟିକ ଭାବେ ଅଟକାଇ ଥାଆନ୍ତି ସିନା, ବେଶି କିଛି ଫଳ ହୁଅନ୍ତା ନାହିଁ । ସେମାନଙ୍କ ସହିତ ତାହାହିଁ ଶେଷ ଦେଖା ଭାବି ସେମାନଙ୍କୁ ବିଦାୟ-ସମ୍ଭାଷଣ ଜଣାଇଲି । କିଛି ସମୟ ବେଶ୍ ଭଲରେ ଗଲା । ଏଗାରଟା ବାଜି ପଇଁଚାଳିଶ ମିନିଟ୍ ସମୟରେ ସେମାନେ ତିନିଶହ ଫ୍ୟାଦମ ତଳକୁ ପହଞ୍ଚିଲେ, ସେଇଠି ସେମାନେ ସମୁଦ୍ରତଳ ପାଇଥିଲେ । ଡା: ମାରାକଟ୍ ମୋତେ କେଇଥର ବାର୍ତ୍ତା ପଠାଇଥିଲେ । ସବୁ ଠିକ୍ ଚାଲିଚି ବୋଲି ମନେହେଉଥିଲା । କିନ୍ତୁ ହଠାତ୍ ଥରେ ତାଙ୍କର ଉଦ୍‌ବିଗ୍ନ କଣ୍ଠସ୍ୱର ଶୁଣିବାକୁ ପାଇଲି ଏବଂ ସେଇ ସମୟରେ ଦଉଡ଼ିଟା ବି ଖୁବ୍ ଜୋରରେ ହଲୁଚି ଦେଖାଗଲା । ତା'ପରେ ସେଇଟା କଟିଗଲା । ମନେହୁଏ ସେଇ ସମୟରେ ସେମାନେ ଗୋଟାଏ ଖୁବ୍ ଗଭୀର ଖାତ ମୁହଁରେ ଥିଲେ, କାରଣ ଡକ୍‌ଟରଙ୍କ ଅନୁରୋଧ ଅନୁସାରେ ଜାହାଜ ଖୁବ୍ ଧୀରେ ଧୀରେ ସାମନା ଆଡ଼କୁ ଆଗେଇ ଯାଇଥିଲା । ପବନ ନଳିଗୁଡ଼ିକ ସେ ପର୍ଯ୍ୟନ୍ତ କାର୍ଯ୍ୟକ୍ଷମ ଥିଲେ । ମୋର ମନେହୁଏ ପ୍ରାୟ ଅଧମାଇଲିଏ ଯିବା ପରେ ସେଗୁଡ଼ିକ କଟିଗଲା । ଡା: ମାରାକଟ୍, ମି: ହେଡ୍‌ଲେ ବା ମି: ସ୍କାନ୍‌ଲନ୍‌ଙ୍କ ବିଷୟରେ ଆଉ କେବେ କିଛି ଜାଣିପାରିବାର ଆଶା ନାହିଁ ।

'ତଥାପି ଗୋଟାଏ ଅତ୍ୟନ୍ତ ଅସାଧାରଣ ଘଟଣା କଥା ଲେଖି ରଖିବା ଦରକାର । ତା'ର ଅର୍ଥ କ'ଣ ଭାବି ଦେଖିବାର ସମୟ ମୁଁ ପାଇନାହିଁ, କାରଣ ଆକାଶର ରୂପ ବଡ଼ ଖରାପ ହୋଇଆସିବାରୁ ମୋତେ ନାନାକଥା ଭାବିବାକୁ ପଡୁଥିଲା । ସେମାନେ ସମୁଦ୍ର ଭିତରକୁ ଓହ୍ଲାଇବା ସଙ୍ଗେ ସଙ୍ଗେ ଓଳମ ପକାଯାଇଥିଲା, ଗଭୀରତା ଦେଖାଗଲା

ଛବିଶହଜାର ଛ' ଶହଫୁଟ୍ । ଓଲମର ସୀସାଟା ଅବଶ୍ୟ ସମୁଦ୍ର ତଳେ ରହିଗଲା, କିନ୍ତୁ ତାରଟା ବର୍ତ୍ତମାନ ମାତ୍ର ଉଠାଇ ଅଣା ହୋଇଚ ଓ ପଢ଼ି କେହି ବିଶ୍ୱାସ କରିବେ ନାହିଁ । ନମୁନା ଉଠାଇ ଆଣିବା ପାଇଁ ତାର ମୁଣ୍ଡରେ ଚୀନାମାଟିର ଯେଉଁ କପ୍ ଥାଏ ତାହାର ଟିକିଏ ଉପରକୁ ମି. ହେଡ୍‌ଲେଙ୍କ ନାମାଙ୍କିତ ରୁମାଲଟି ବନ୍ଧାରହିଚି । ଜାହାଜର ସମସ୍ତେ ସ୍ତମ୍ଭିତ, କେହି ଭାବି ଠିକ୍ କରିପାରୁନାହାନ୍ତି ଏଟା କିପରି ସମ୍ଭବ ହେଲା । ଏହା ପର ବିବରଣୀରେ ହୁଏତ ଏ ବିଷୟରେ ଆଉ କିଛି କହିପାରିବ । ପାଣି ଉପରେ କିଛି ଭାସି ଉଠିପାରେ ଏହି ଆଶାରେ ଆମେ ଏଠି ଆଉ କେଇ ଘଣ୍ଟା ରହିଗଲୁ । ଦଉଡ଼ିଟା ବି ଓଟାରି ଆଣିଛୁ, ତା'ମୁଣ୍ଡଟା ଅସମାନ, ଆବୁଡ଼ା ଖାବୁଡ଼ା । ବର୍ତ୍ତମାନ ମୋତେ ଜାହାଜକୁ ନଜର ରଖିବାକୁ ହେବ । ଆକାଶର ରୂପ ଏହାଠୁ ବଳି ଖରାପ ମୁଁ କେବେ ଦେଖିନି, ବ୍ୟାରୋମିଟର ୨୮.୫କୁ ଖସିଲାଣି, ଶୀଘ୍ର ଖସୁଛି ।'

ଭାବିଲେ ଅଦ୍ଭୁତ ଲାଗେ ଯେ ଏଇ ଲେଖା ଆମେ ହିଁ ପଢ଼ିଲୁ ଅଥଚ କ୍ୟାପ୍‌ଟେନ୍ ହାଓୟି ରହିଲେ ନାହିଁ ।

ସେଠି ଥିବା ସମୟରେ କାଚଗୋଲକ ଭିତରେ ଆମ ନିଃଶ୍ୱାସ ରୁଦ୍ଧ ହୋଇ ଆସୁଥିବା ଭଳି ଲାଗିଲା; ଛାତି ଉପରେ କ୍ରମଶଃ ଓଜନ ବଢ଼ିବା ଭଳି ଅନୁଭବ କଲି । ବୁଝିପାରିଲି ଏଥର ଫେରିବା ଦରକାର । ଫେରିବା ବାଟରେ ଆଉ ଗୋଟିଏ ଘଟନା ଘଟିଲା ଯେଉଁଥିରୁ ଆମେ ଜାଣିପାରିଲୁ ଯେ ଏପରି କୌଣସି କୌଣସି ବିପଦ ଅଛି ଯାହା ପାଖରେ ଏଠାକାର ଲୋକେ ଏକାବେଳକେ ଅସହାୟ । ଆଉ ମଧ୍ୟ ସେଇଥିରୁ ବୁଝିଲୁ ଏ କେତେ ହଜାର ବର୍ଷ ଭିତରେ ସେମାନଙ୍କ ଲୋକସଂଖ୍ୟା କାହିଁକି ବେଶି ବଢ଼ିପାରିନାହିଁ । ସେହି ଗ୍ରୀକ୍ ଦାସମାନଙ୍କ ସହ ଏମାନଙ୍କ ସଂଖ୍ୟା ସର୍ବମୋଟ ପ୍ରାୟ ଚାରି ପାଞ୍ଚ ହଜାରରୁ ବେଶୀ ନୁହେଁ ।

ଆମେ ସେଇ ଶିଢ଼ି ବାଟେ ଓହ୍ଲାଇ ଆଗ୍ନେୟଶିଳା ପାର୍ଶ୍ୱବର୍ତ୍ତୀ ସେହି ଜଙ୍ଗଲ ଦେଇ ଆସୁଥିଲୁ । ଏହି ସମୟରେ ମାଣ୍ଡା ହଠାତ୍ ଉତ୍ତେଜିତ ଭାବରେ ଉପରକୁ ଅଙ୍ଗୁଳି ଦେଖାଇଲେ ଓ ଆମ ଦଳରୁ ଯେଉଁ ଜଣକ ଦଳଛଡ଼ା ହୋଇ ପଛରେ ପଡ଼ିଯାଇଥିଲା ତାକୁ ପ୍ରାଣପଣ ଇସାରାଦ୍ୱାରା ଡାକିବାକୁ ଲାଗିଲେ । ଅତି ଶୀଘ୍ର ଆମ ସମସ୍ତଙ୍କୁ ସେ ଟାଣିନେଲେ । ସେ ଓ ଆଉ ସମସ୍ତେ କେତେଗୁଡ଼ିଏ ବଡ଼ ବଡ଼ ପଥର ପାଖକୁ ଦୌଡ଼ିଗଲୁ । ସେଇଠି ଆଶ୍ରୟ ନେବା ପରେ ଆମେ ଭୟର କାରଣଟିକୁ ଦେଖିବାକୁ ପାଇଲୁ । ଆମ ଉପର ଭାଗରେ କିଛି ଦୂରରେ ଗୋଟାଏ ପ୍ରକାଣ୍ଡ ଅତି ଅଦ୍ଭୁତ ଆକୃତିର ଜନ୍ତୁ ବେଶ୍ କ୍ଷିପ୍ରତାର ସହିତ ଓହ୍ଲାଇ ଆସୁଥାଏ । ମନେହେଉଥିଲା ଗୋଟିଏ ଖୁବ୍ ବଡ଼ ପକ୍ଷୀ ପର ଖଞ୍ଜା ଗଦି, ଦେଖିବାକୁ ସେମିତି ନରମ ଓ ଫୁଲକା । ତା' ତଳପଟଟା ଧଳା । ଗୋଟାଏ ପଟରେ ଲମ୍ୱା ନାଲି ଝାଲର ଭଳି ଅଛି ଯାହାକୁ ହଲାଇ ସେ ପାଣି

ଭିତରେ ଯା-ଆସ କରେ । ଦେଖି ମନେହେଉଥିଲା ତାହାର ମୁହଁ ନାହିଁ କି ଆଖି ନାହିଁ । କିନ୍ତୁ ଅଳ୍ପ ସମୟ ପରେ ବୁଝିପାରିଲୁ ସେଟା କି ସାଂଘାତିକ ଭାବରେ ସଚେତନ । ଦଳଛଡ଼ା ଲୋକଟି ଆମ ଆଡ଼କୁ ଦୌଡ଼ିଆସୁଥିଲା, କିନ୍ତୁ ବୋଧହୁଏ ବୁଝିପାରିଲା ଆଉ ଆଶା ନାହିଁ । ଭୀଷଣ ଭୟରେ ତା'ର ମୁହଁ ବିକୃତ ହୋଇଗଲା । ସେଇ ବିଚିତ୍ର ଜନ୍ତୁଟା ତା' ଉପରେ ମାଡ଼ି ବସି ତାକୁ ଚାରିଆଡୁ ଜାପଟି ଧରି ପଡ଼ିରହିଲା । ଆମଠୁ ମାତ୍ର କେଇ ଗଜ ଦୂରେ ଏ କାଣ୍ଡ ଘଟୁଥାଏ, କିନ୍ତୁ ଆମ ସାଥୀମାନେ ଏପରି ଭୀତ ହୋଇପଡ଼ିଥାନ୍ତି ଯେ ମନେହେଉଥାଏ ସେମାନଙ୍କର ହଲଚଲ ହବାର କ୍ଷମତା ଲୋପ ପାଇଚି । ସ୍କାନ୍‌ଲନ୍ ଦୌଡ଼ିଯାଇ ସେହି ଜନ୍ତୁଟାର ନାଲି ଓ କହରା ରଙ୍ଗର ଛାପଛାପକା ପିଠି ଉପରେ କୁଦିପଡ଼ି ହାତରେ ଥିବା ତେଣ୍ଟାଟା ତା'ର ନରମ ଦେହରେ ଭସି ଦେଲା । ମୁଁ ବି ସ୍କାନ୍‌ଲନ୍ ପଛେ ପଛେ ଦୌଡ଼ିଯାଇଥିଲି । ପରେ ମାରାକଟ୍ ଓ ଅନ୍ୟମାନେ ଆସି ଜନ୍ତୁଟାକୁ ଆକ୍ରମଣ କରିବାରୁ ସେଟା ଗୋଟାଏ ତେଲିଆ ରସ ଛାଡୁ ଛାଡୁ ଆସ୍ତେ ଆସ୍ତେ ଭାସିଭାସିକା ଉପରକୁ ଉଠିଗଲା । କିନ୍ତୁ ସେତେବେଳକୁ ସେ ଲୋକଟିର କାଚ ଗୋଲକଟି ଭାଙ୍ଗିଯାଇଥିବାରୁ ନିଃଶ୍ୱାସରୁଦ୍ଧ ହୋଇ ସେ ମରିଯାଇଥିଲା । ତା'ର ମୃତ ଦେହ ନେଇ ଆମେ ଶରଣାଳୟକୁ ଫେରିଆସିଲୁ । ମୃତ ଲୋକଟି ପାଇଁ ସମସ୍ତେ ଦୁଃଖ ପ୍ରକାଶ କଲେ ଆଉ ଆମ ସାହସ ଦେଖି ସେମାନେ ଆମକୁ ଆହୁରି ଖାତିରକଲେ । ସେଇ ଅଦ୍ଭୁତ ଜନ୍ତୁ ବିଷୟରେ ଡା: ମାରାକଟ୍ କହିଲେ ଯେ ସେଟା କମ୍ବଳ-ମାଛର ଗୋଟାଏ ନମୁନା । ମତ୍ସ୍ୟବିଦ୍‌ମାନଙ୍କୁ ଭଲଭାବେ ଜଣା । ତେବେ ଆକାରଟା ତାଙ୍କ ସ୍ୱପ୍ନାତୀତ ।

ଏଇ ଜୀବଟି କଥା ସବିସ୍ତାର କହିଲି କାରଣ ତା'ରି ପାଇଁ ଆମର ଏକ ବନ୍ଧୁର ପ୍ରାଣଗଲା । କିନ୍ତୁ ତା'ଛଡ଼ା ସମୁଦ୍ର ତଳେ ଆହୁରି ଏତେ ଆଶ୍ଚର୍ଯ୍ୟକର ଜୀବ ଅଛନ୍ତି ଯେ ସେ ବିଷୟରେ ମୁଁ ଗୋଟିଏ ବହି ଲେଖିପାରେ, ହୁଏତ ଲେଖିବି ମଧ୍ୟ । ଗଭୀର ସମୁଦ୍ରର ପ୍ରାଣୀମାନଙ୍କ ମଧ୍ୟରେ ନାଲି ଓ କଳା ଏ ଦୁଇ ରଙ୍ଗହିଁ ବେଶି ଦେଖାଯାଏ । ଗଛବୃଛର ରଙ୍ଗ ଫିକା ସବୁଜ ଏବଂ ସେଗୁଡ଼ିକ ଏତେ ଦୃଢ଼ ଯେ ଟ୍ରଲ୍‌ରେ ପ୍ରାୟ ଉଠିଆସିନ୍ତି ନାହିଁ । ତେଣୁ ବିଜ୍ଞାନୀମାନଙ୍କ ଧାରଣା ହୋଇଛି ଯେ ସମୁଦ୍ରତଳେ ଗଛବୃଛ ନାହିଁ । ଅନେକ ସାମୁଦ୍ରିକ ପ୍ରାଣୀ ଦେଖିବାକୁ ଆଶ୍ଚର୍ଯ୍ୟ ରକମର ସୁନ୍ଦର । ପୁଣି ଅନେକ ଏପରି ବୀଭତ୍ସ ଯେ ମନେହୁଏ ଦୁଃସ୍ୱପ୍ନ ଦେଖୁଛି । ସେମାନେ ମଧ୍ୟ ଏତେ ସାଙ୍ଘାତିକ ଯେ କୌଣସି ସ୍ଥଳଚର ଜୀବ ତାଙ୍କର ସମାନ ନୁହେଁ । ଥରେ ସାମୁଦ୍ରିକ ସାପ ଦେଖିବାର ସୁଯୋଗ ମୋର ହୋଇଥିଲା । ଅନ୍ୟାନ୍ୟ ନାନା ଅଦ୍ଭୁତ ଓ ଭୟଙ୍କର କଥା ଛାଡ଼ି ତା' କଥା ହିଁ ଲେଖେ । ଏ ଜୀବଟି ମଣିଷ ଆଖିରେ କଦାଚିତ୍ ପଡ଼ିଛି, କାରଣ ସମୁଦ୍ରର ଅତି ଗଭୀର ତଳଦେଶ ଏହାର ନିବାସସ୍ଥଳୀ, କେବଳ ଯେବେ ସାଗରଜଳ ଆଭ୍ୟନ୍ତରୀଣ

କୌଣସି ତୁମୂଳ ଆଲୋଡ଼ନ ଫଳରେ ସେ ବାସଛଡ଼ା ହୋଇ ଉପରକୁ ଉଠିଆସେ ସେତେବେଳେ କେବେ କେବେ ଏହା ଦୃଶ୍ୟ ହୁଏ । ଏଇଭଳି ଦୁଇଟି ସାପ ଥରେ ମୋର ଓ ମୋନାର ପାଖ ଦେଇ ପହଁରି ଚାଲିଗଲେ । ଆମେ ଦି'ଜଣ ସାମୁଦ୍ରିକ ଘନ ଦଳ ଉହାଡ଼ରେ ଲୁଚିଗଲୁ । କି ବିରାଟ ଆକାର ! ଦଶଫୁଟ ଯାଏ ଉଚ୍ଚ ଓ ଦୁଇଶହ ଫୁଟ ସରିକି ଲମ୍ବା । ଉପର ପଟଟା କଳା, ତଳ ପଟଟା ରୂପା ଭଳି ଚକ୍‌ଚକ୍ ଧଳା । ପିଠି ଉପର ବରାବର ଗୋଟିଏ ଶିରା ରହିଛି, ଆଖି ଦୁଇଟା ସାନ ସାନ–ଗୋରୁ ଆଖିଠୁଁ ବଡ଼ ହେବ ନାହିଁ । ଏଇ ସବୁ ଜୀବର ଓ ଏହିପରି ଆହୁରି ଅନେକ ପ୍ରକାର ଜୀବର ବିବରଣ ମିଳିବ ଡା: ମାରାକଟ୍‌ଙ୍କ ଲିପିରେ–ଯଦି କେବେ ତାହା ତୁମ ହାତରେ ପହଞ୍ଚେ ।

ଆମ ନୂତନ ଜୀବନ ସପ୍ତାହ ପରେ ସପ୍ତାହ ବିତିବାକୁ ଲାଗିଲା । ସେ ଜୀବନ ଆମକୁ ବେଶ୍ ସୁହାଇଗଲା । ବହୁଦିନରୁ ଲୁପ୍ତ ହୋଇଯାଇଥିବା ଭାଷା ଆମେ ଯେତିକି ଶିଖିନେଲୁ ସେଥିରେ ଏଠାର ବନ୍ଧୁମାନଙ୍କ ସହିତ କଥାବାର୍ତ୍ତା କିଛି ଚାଲିପାରିଲା । ସେ ଆଶ୍ରୟସଦନରେ ଶିଖିବା ଓ ଭଲ ଲାଗିବା ଭଳି ଅନେକ କଥା ଥିଲା । ଏ ଦେଶର ଲୋକେ ଅନ୍ୟାନ୍ୟ ବିଷୟ ଛଡ଼ା ପରମାଣୁ ଖଣ୍ଡନ ମଧ୍ୟ ଜାଣନ୍ତି । ଯେଉଁ ଶକ୍ତି ସେଥିରୁ ଆହରିତ ହେଉଛି ତାହା ପୃଥିବୀର ବିଜ୍ଞାନୀମାନଙ୍କ ଅନୁମାନ ଅପେକ୍ଷା କମ୍ ହେଲେ ବି ସାମାନ୍ୟ ନୁହେଁ । ତାଦ୍ୱାରା ସେମାନେ ବିରାଟ ଶକ୍ତିଭଣ୍ଡାର ଗଢ଼ିପାରିଛନ୍ତି । କୌଣସି କୌଣସି ବିଷୟରେ ସେମାନଙ୍କ ଜ୍ଞାନ ଆମଠାରୁ ବେଶି, ଯଥା ଚିନ୍ତାର ପ୍ରତିଛବି । ଚିନ୍ତା ଜିନିଷଟା ଯେ କ'ଣ ତା'ତ ଆମେ ଆଜି ପର୍ଯ୍ୟନ୍ତ ଜାଣୁନା ।

ତଥାପି ସେମାନଙ୍କର ଏତେ ଜ୍ଞାନ ଥିବା ସତ୍ତ୍ୱେ, ଆମର ଆଧୁନିକ ବିଜ୍ଞାନରେ ନାନା ଆବିଷ୍କାର ମଧ୍ୟରେ ଏପରି ଗୋଟିଏ ଦିଓଟି ଜିନିଷ ଅଛି ଯାହା ଏମାନଙ୍କର ପୂର୍ବପୁରୁଷମାନଙ୍କ ଦୃଷ୍ଟିରେ ପଡ଼ିନାହିଁ, ତେଣୁ ସେଗୁଡ଼ିକ ଏମାନଙ୍କୁ ନୂଆ । ସ୍କାନ୍‌ଲନ୍‌ର ଭାଗ୍ୟରେ ଥିଲା ତାହା ପ୍ରମାଣ କରିବା । କେଇଦିନ ଯାବତ୍ ଲକ୍ଷ୍ୟ କରିଥିଲି ସେ ଯେମିତି ଗୋଟାଏ ନିରୁଦ୍ଧ ଉତ୍ତେଜନା ଭିତରେ ରହିଚି । ସତେକି ଗୋଟାଏ ଭାରି ବଡ଼ ଗୁପ୍ତ କଥା ସେ ଚାପି ରଖିବାକୁ ଯାଇ ପେଟ ତା'ର ଫାଟି ଯିବ ପରା ! ନିଜ ଚିନ୍ତାରେ ସେ ମନକୁମନ ହସେ । ସେ ସମୟରେ ଆମ ସହିତ ତା'ର ସାକ୍ଷାତ୍ ବେଶି ହେଉନଥିଲା । ସେତେବେଳେ ତା'ର ସାଥୀ ଥିଲା ବେରପ୍ରିକ୍‌ସ ନାମରେ ଗୋଟିଏ ହୃଷ୍ଟପୁଷ୍ଟ ଆମୋଦପ୍ରିୟ ଆଟଲାଣ୍ଟୀୟ ଯୁବକ । ସେ ସେଠାକାର କୌଣସି କାରଖାନାର ତତ୍ତ୍ୱାବଧାରକ । ସ୍କାନ୍‌ଲନ୍ ଓ ବେରପ୍ରିକ୍‌ସ ମଧ୍ୟରେ କଥାବାର୍ତ୍ତାର ମାଧ୍ୟମ ଥିଲା ଇଙ୍ଗିତ ଇଶାରା ଓ ପିଠି ଆପୁଡ଼ା । ଦିନେ ସନ୍ଧ୍ୟାରେ ( ? ) ସ୍କାନ୍‌ଲନ୍ ଆମ ପାଖକୁ ଆସିଲା, ମୁହଁରେ ଖୁସିର ଭାବ ।

ମାରାକଟ୍‌ଙ୍କୁ କହିଲା, 'ଧରନ୍ତୁ ଡକ୍, ମୋର ନିଜସ୍ୱ କିଛି ବିଦ୍ୟା ଅଛି, ଏମାନଙ୍କ ଆଗରେ ତାହା ଜାହିର କରିବାକୁ ଚାହେଁ । ସେମାନେ ଆମକୁ ଗୋଟେ ଦି'ଟା ବିଦ୍ୟା ଅବଶ୍ୟ ଦେଖାଇଚନ୍ତି, ମୋର ମନେହୁଏ ତା' ଜବାବରେ କିଛି ଦେଖାଇବା ଉଚିତ । କାଲି ରାତିରେ ସେଥିପାଇଁ ସେମାନଙ୍କୁ ଡାକିଲେ କେମିତି ହୁଅନ୍ତା ?'

ମୁଁ ପଚାରିଲି, 'କି ନାଚ ନାଚିବ – ଜ୍ୟାଜ ନା ଚାର୍ଲଷ୍ଟନ୍ ?'

'ଆରେ ଚାର୍ଲଷ୍ଟନ୍ ଫାର୍ଲଷ୍ଟନ୍ ନୁହେଁ । ଆଗେ ଦେଖନା–ଏମାନଙ୍କ ଆଖି କପାଳକୁ ଉଠିଯିବ ତାହା ଦେଖିଲେ । ବାସ୍ ଆଉ ପଦେ କଥା ବି କହିବି ନାହିଁ । ହେଲେ ସାଙ୍ଗ ତୁମକୁ ବୁଡ଼େଇଦେବିନି । ଆଶ୍ଚର୍ଯ୍ୟ କରିଦେବା ଭଳି ଇଲମ୍ ମୁଁ ଜାଣେ ।'

ତଦନୁଯାୟୀ ପରଦିନ ସନ୍ଧ୍ୟାରେ ସେଠାକାର ଜନସମାଜ ତାଙ୍କ ପ୍ରେକ୍ଷାଗୃହରେ ଏକତ୍ରିତ ହେଲେ । ସ୍କାନ୍‌ଲନ୍ ଓ ବେରଫ୍ରିକ୍‌ସ ମଞ୍ଚ ଉପରକୁ ଉଠିଲେ । ଗର୍ବରେ ତାଙ୍କ ଛାତି ବେଶି ଫୁଲିଉଠିଥାଏ । ତା'ପରେ ଗୋଟାଏ ବୋତାମ ଟିପିବାରୁ ଯାହା ଘଟିଲା ତାହା ସ୍କାନ୍‌ଲନ୍ ଭାଷାରେ କୁହାଗଲେ ହେବ, 'ହାତେ ଦେଖେଇ ଦେଲି ତାଙ୍କୁ, କାରଣ ଆମକୁ ସେମାନେ ଥୋଡ଼େ ଅବାକ୍ କରିଦେଇଥିଲେ ପରା ।'

ପରିଷ୍କାର ଭାବରେ ଶୁଣିଲି, 'ଟୁ-ଏଲ୍ ଓ କଲିଂ, ଲଣ୍ଡନ୍ କଲିଂ ବ୍ରିଟିଶ୍ ଆଇଲସ୍ । ୱେଦର ଫୋର୍‌କାଷ୍ଟ ।'

ତା'ପରେ ଆବହ ସୂଚନାର ଚିରପରିଚିତ ବିବରଣୀ । ତା'ପରେ ପ୍ରଥମ ସମ୍ବାଦ ସ୍ତବକ । 'ମହାମହିମ ଇଂଲଣ୍ଡେଶ୍ୱର ଆଜି ପୂର୍ବାହ୍ଣରେ ହ୍ୟାମରିସ୍ମିଥସ୍ଥ ଶିଶୁ-ଚିକିତ୍ସାଳୟର ନବନିର୍ମିତ ଅଂଶଟିର ଦ୍ୱାରୋଦ୍‌ଘାଟନ କଲେ'–ଇତ୍ୟାଦି ଇତ୍ୟାଦି । ଏତେଦିନ ପରେ ହଠାତ୍ ପୁଣି ଆମେ ଯେମିତି ସେହି ପ୍ରତିଦିନର ଦିହଘଷା ଇଂଲଣ୍ଡକୁ ଫେରିଗଲୁ । ତା'ପରେ ଶୁଣିଲୁ ବୈଦେଶିକ ସମ୍ବାଦ, ଖେଳ ଖବର । ଆମର ପୁରାତନ ପୃଥିବୀ ଚାଲିଛି ସେଇ ଧରାବନ୍ଧା ଗତିରେ । ଆମର ଆଟଲାଣ୍ଟିସ୍‌ର ବନ୍ଧୁଗଣ ବିସ୍ମୟବିମୁଗ୍ଧ ହୋଇ ଶୁଣିବାକୁ ଲାଗିଲେ, କିନ୍ତୁ କିଛି ବୁଝିପାରିଲେ ନାହିଁ । ସମ୍ବାଦ ପରେ ସେଦିନର ସଂଗୀତର ପ୍ରଥମ ଦଫାରେ ଯେତେବେଳେ ବାଜିଲା ରକ୍ଷୀଦଳର ବ୍ୟାଣ୍ଡ ସେତେବେଳେ ସମସ୍ତେ ଆନନ୍ଦରେ ଚିତ୍କାର କରି ଉଠିଲେ । ଦୌଡ଼ି ଯାଇ ମଞ୍ଚ ଉପରେ ଉଠି ପର୍ଦା ଘୁଞ୍ଚାଇ ଦେଖିବାକୁ ଲାଗିଲେ କେଉଁଠୁ ବାଜା ଆସୁଚି । ଅତଳ ସାଗରର ଏହି ସଭ୍ୟତା ଉପରେ ଆମେ ଚିରଦିନ ପାଇଁ ଆମ ଚିହ୍ନ ଆଙ୍କିଦେଲୁ ଏଥିରେ ସନ୍ଦେହ ନାହିଁ ।

ଏଠାରୁ ବେତାର ବାର୍ତ୍ତା ପଠାଇବାର କୌଣସି ଉପାୟ ହୋଇପାରେ କି ନା ପଚାରିବାରୁ ସ୍କାନ୍‌ଲନ୍ କହିଲା–ତା' ପାରିବି ନାହିଁ ସାର୍ ! ତା'ପାଇଁ ସରଞ୍ଜାମ ଏଠି ନାହିଁ, ଆଉ ମୋ ମୁଣ୍ଡରେ ବି ଏତେ ମସଲା ନାହିଁ ।'

ଆଟଲାଣ୍ଟିସ୍‌ର ରସାୟନବିଦ୍‌ଙ୍କ ନାନା ଆବିଷ୍କାର ଭିତରେ ଗୋଟିଏ ହେଲା ଏକପ୍ରକାର ଗ୍ୟାସ୍ ଯାହା ଉଦ୍‌ଜାନଠାରୁ ନ'ଗୁଣ ହାଲୁକା । ମାରାକଟ୍ ତା' ନାଁ ଦେଇଛନ୍ତି, ଲାଘବଜାନ । ଏହି ବାଷ୍ପଦ୍ୱାରା ସେ ନାନାପ୍ରକାର ପରୀକ୍ଷା କରି ଦେଖିଚନ୍ତି, ଆଉ ତା' ଫଳରେ କାଚଗୋଲକ ଭିତରେ ଚିଠି ପଠାଇବାର କଳ୍ପନା ଆମ ମୁଣ୍ଡକୁ ଆସେ ।

ସେ କହିଲେ, 'ମୁଁ ମାଣ୍ଡାକୁ ବୁଝାଇ କହିଚ ମୋ ଉପାୟଟିର କଥା । ସେ କାଚକାରିଗରମାନଙ୍କୁ ବରାଦ ଦେଇଛନ୍ତି, ଦିନେ ଦି' ଦିନ ଭିତରେ ଗୋଲକ ପ୍ରସ୍ତୁତ ହୋଇଯିବ ।'

ମୁଁ କହିଲି, 'କିନ୍ତୁ ଆମ ଲେଖା ତା' ଭିତରେ ରଖିବା କେମିତି ?'

'ଗ୍ୟାସ୍ ଭରିବା ପାଇଁ ଗୋଟିଏ ସାନ କଣା ଥିବ । ସେଇ ବାଟେ ଲେଖାଗୁଡ଼ିକ ଭରତି କରିଦିଆଯିବ । ତା'ପରେ କାରିଗର କଣାଟି ବନ୍ଦ କରିଦେବ । ଏଥିରେ ଆମର ସନ୍ଦେହ ନାହିଁ ଯେ ସେ ଗୋଲକକୁ ଛାଡ଼ିଦେଲେ ଏହା ସିଧା ସମୁଦ୍ର ପୃଷ୍ଠକୁ ଉଠିଯିବ ।'

'ତାପରେ ବର୍ଷେ କାଳ ଢେଉ ଉପରେ ନାଚୁଥିବ ।'

'ହୋଇପାରେ । ସୂର୍ଯ୍ୟାଲୋକ ପଡ଼ି ଗୋଲକଟି ଝକ୍‌ଝକ୍ ଦଶିବ ଆଉ ନିଶ୍ଚୟ ଦିନେ କାହାରି ଦୃଷ୍ଟିରେ ପଡ଼ିବ । ଇଉରୋପରୁ ଦକ୍ଷିଣ ଆମେରିକାକୁ ଜାହାଜ ଚଳାଚଳ ପଥରେ ଆମେ ଥିଲୁ । କେତେଗୁଡ଼ିଏ ଗୋଲକ ପଠାଇଲେ ସେଥିରୁ ଅନ୍ତତଃ ଗୋଟିଏ ବି କେହି ପାଇବେ ନାହିଁ ଏପରି ଆଶଙ୍କା କରିବାର କୌଣସି କାରଣ ନାହିଁ ।'

'ଭାଇ ଟ୍ୟାଲ୍‌ବଟ୍ ବା ଅନ୍ୟ ଯେ କେହି ଏ ଲେଖାଟି ପଢ଼ିବେ, ଜାଣିବେ ଏହିପରି ଭାବରେ ଏହା ଆପଣଙ୍କ ହସ୍ତଗତ ହୋଇଛି ।'

କିନ୍ତୁ ଆହୁରି ବଡ଼ ଧରଣର ଫିକର ବାହାରିଲା ମାର୍କିନ୍ ଯନ୍ତ୍ରଶିଳ୍ପୀର ଉର୍ବର ମସ୍ତିଷ୍କରୁ । ଷ୍କାନ୍‌ଲନ୍ କହିଲା, 'ଧରନ୍ତୁ ନା, ଏ ସ୍ଥାନଟି ଅବଶ୍ୟ ଖୁବ୍ ସୁନ୍ଦର ତେବେ ବି କେବେ କେବେ ମନହୁଏ ନିଜ ଦେଶଟା ଆଉ ଥରେ ଦେଖିପାରିଲେ ମନ୍ଦ କ'ଣ ହୁଅନ୍ତା ।'

ମୁଁ କହିଲି, 'ସେମିତି ମନ ତ ଆମର ବି ହୁଏ । କିନ୍ତୁ ଉପାୟ କିଛ ଆମ ପାଖରେ ନାହିଁ ।'

'ଆରେ ସାଙ୍ଗ ଶୁଣ, ଏଇ ଗ୍ୟାସ୍ ଭର୍ତ୍ତି କାଚ ବେଲୁନ୍‌ଗୁଡ଼ିକ ଯଦି ଚିଠି ବୋହିନେଇ ଯାଇପାରେ—ଥଟ୍ଟା କରୁନି—ମୁଁ ରୀତିମତ ହିସାବ କରି ଦେଖିଛି—ଧର ଏମିତି ତିନିଚାରିଟା ଆମେ ଏକାଠି କଲୁ, ତା'ହେଲେ ତ ଉପରକୁ ଉଠିଯିବାର ଶକ୍ତି ଆମେ ଅତି ସହଜରେ ପାଇବୁ, ନା ନାହିଁ ? ତା'ପରେ ଧର ଆମେ ଆମ କାଚମୁଖା ପିନ୍ଧା ଏଇ ବେଲୁନ୍ ସହିତ ନିଜକୁ ବାନ୍ଧିଦେଲୁ, ଆଉ ଘଣ୍ଟା ବାଜିବା ମାତ୍ରେ ଦଉଡ଼ି କାଟି ଉପରକୁ ଛୁ । ତା' ପରେ ଆମକୁ ଆଉ ଅଟକାଏ କିଏ ?'

'ଧର ମଗର–'

'ଆରେ ଧ୍ୟେତ୍, ଆମେ ମଗର ପାଖ ଦେଇ ସାଁ କରି ଏମିତି ଉଡ଼ିଯିବୁ ଯେ ସେ ବାରି ପାରିବ ନାହିଁ କ'ଣ ଗଲା ତା' ଦେହରେ ଘଷିହୋଇ । ଭାବିବ ତିନିଟା ଆଲୁଅ ଝଲକ ଚାଲିଗଲା । ସତକୁସତ ଆମେ ଏ ମୁଣ୍ଡରୁ ଏମିତି ଜୋର୍ ଧକ୍କା ପାଇ ଉଠିବୁ ଯେ ସେ ମୁଣ୍ଡରେ ପାଣି ଉପରୁ ପଚାଶଫୁଟ ଉପରକୁ ଉଠିଯିବୁ ।'

'ଉତ୍ତମ, ସେଇୟା ଧର ହେଲା । ତା'ପରେ ?'

'ପିଟରଙ୍କ ରାଣ, ଏଥିରୁ 'ତା'ପରେ' ବାଦ୍ ଦିଅ । ଥରେ ଭାଗ୍ୟକୁ ଆଦରି ଡେଇଁ ପଡ଼ନା, ଦେଖିବା କ'ଣ ଘଟୁଛି ।'

ମାରାକଟ୍ କହିଲେ, 'ମୋର ଅବଶ୍ୟ ଇଚ୍ଛା ଆମ ଜଗତକୁ ଫେରି ଯାଇ, ଆଉ କିଛି ନ ହେଲେ ବି ଏଠି ଆମର ନାନା ପରୀକ୍ଷାର ଫଳଗୁଡ଼ିକ ତ ପୃଥିବୀର ବିଜ୍ଞାନୀମାନଙ୍କ ଦରବାରରେ ପେଶ୍ କରିପାରିବୁ । ମୁଁ ସ୍କାନ୍‌ଲନ୍‌ଙ୍କ ପରିକଳ୍ପନାକୁ ଅନୁମୋଦନ କରେ ।'

ଏ ବ୍ୟାପାରରେ ମୋର ଆଗ୍ରହ ସବୁଠୁ ଊଣା ହେବାର କାରଣ ଅବଶ୍ୟ ଥିଲା । ସେ କଥା ପରେ କହିବି । ମୁଁ କହିଲି, 'ତୁମର ଏ ଫିକରଟା ତୁଚ୍ଛା ପାଗଳାମି । ଆମ ପାଇଁ ଉପରେ ଯଦି କେହି ପ୍ରସ୍ତୁତ ହୋଇ ରହିନଥାନ୍ତି ତେବେ ଆମେ ତ ଖାଲି ଭାସୁଥିବା, ଆଉ ଶେଷରେ ଭୋକଶୋଷରେ ମରିଯିବା ।'

'ଆହାଃ, ଆମକୁ ଉଠାଇ ନେବାକୁ ପ୍ରସ୍ତୁତ ହୋଇ ପୁଣି ରହିଥିବ କିଏ ?'

ମାରାକଟ୍ କହିଲେ, 'ହୁଏତ ତାର ବନ୍ଦୋବସ୍ତ ବି ହୋଇପାରେ । ଆମେ ଯେଉଁଠି ଅଛୁ ତା'ର ଅକ୍ଷାଂଶ ଓ ଦ୍ରାଘିମା ଦେଇ ପାରୁ, ହୁଏତ ମାଇଲିଏ ଦି' ମାଇଲ ଏପାଖ ସେପାଖ ହେବ, ତାଠୁ ବେଶି ନୁହେଁ ।'

'ଆଉ ସେମାନେ ଗୋଟିଏ ଶିଡ଼ି ଓହ୍ଲାଇ ଦେବେ ?' ମୁଁ କହିଲି ଟିକିଏ ଶ୍ଳେଷ କଣ୍ଠରେ ।

'ଆରେ ଶିଡ଼ିଫିଡ଼ି ନୁହେଁ । ଡକ୍‌ଟର ଓ୍ୱାଜିବ୍ କଥା କହିଛନ୍ତି । ମି: ହେଡ୍‌ଲେ ଶୁଣ । ଏଇ ଚିଠିଟି ଯେ ପଠାଉଚ ପୃଥିବୀକୁ–ଉଃ, ସତରେ ଖବରକାଗଜରେ ଚମକି ଜଳୁଥିବା ହେଡ୍‌ଲାଇନ୍‌ଗୁଡ଼ିକ ମୋ ଆଖି ଆଗରେ ଭାସିଯାଉଛି । ଛାଡ଼ ଏଇ ଚିଠି ପଠାଉଚ ସେଥିରେ ଲେଖିଦିଅ ଯେ ଆମେ ଅଛୁ ୨୭° ଉତ୍ତର ଅକ୍ଷାଂଶ ଓ ୨୮°୧୪' ପଶ୍ଚିମ ଦ୍ରାଘିମାରେ– କିମ୍ବା ଯାହା ଠିକ୍ ଲେଖିଦିଅ–ବୁଝିଲ ? ତା'ପରେ ଲେଖ ଇତିହାସର ସର୍ବ ପ୍ରସିଦ୍ଧ ଲୋକମାନଙ୍କ ଭିତରୁ ତିନିଜଣ–ମହାବିଜ୍ଞାନୀ ମାରାକଟ୍, ଛାରପୋକ ସଂଗ୍ରାହକମାନଙ୍କ ମଧ୍ୟରୁ ଉଦୀୟମାନ ତାରକା ହେଡ୍‌ଲେ ଓ ଶ୍ରେଷ୍ଠଯାନ୍ତ୍ରିକ ମେରିବ୍ୟାଙ୍କର ଗର୍ବ ବବ୍ ସ୍କାନ୍‌ଲନ୍–

ସମସ୍ତେ ମିଶି ସମୁଦ୍ରତଳୁ ଗଳାଫଟା ଚିତ୍କାର କରି ସାହାଯ୍ୟ ଭିକ୍ଷା କରୁଛନ୍ତି । ମୋ କଥା ବୁଝିଲ ?'

'ଉତ୍ତମ, ତା' ପରେ-'

'ତା'ପରେ ଲୋକେ ଯାହା –କରିବେ– ଆଉ କ'ଣ ? ଏଟା ଏପରି ଗୋଟାଏ ଆହ୍ୱାନ ଯେ ସେମାନେ ତା' ଗ୍ରହଣ ନ କରି ରହିପାରିବେ ନାହିଁ । ଷ୍ଟାନ୍‌ଲି ଯେମିତି ଲିଭିଂଷ୍ଟୋନ୍‌ଙ୍କୁ ଖୋଜି ବାହାରକରିଥିଲେ ସେମିତି ଘଟିବ, ଆଉ କ'ଣ ? ଆମକୁ ଟାଣି ଉଠାଇବା କିମ୍ବା ଯଦି ନିଜେ ଡିଆଁମାରି ଉଠି ପାରୁ ତେବେ ଆମକୁ ଟାଉକିନା ଧରିବା, ଏସବୁର ଦାୟିତ୍ୱ ସେମାନଙ୍କର ।'

ଅଧ୍ୟାପକ କହିଲେ, 'ଆମେହିଁ ତାହାର ଉପାୟ ବତାଇପାରୁ । ସେମାନେ ଏଇଠି ଓଳମ ପକାନ୍ତୁ । ଆମେ ନଜର ରଖିବୁ ସେଟା କେଉଁଠି ଠିକ୍ ତଳ ଧରିଲା । ତା'ପରେ ସେଥିରେ ଗୋଟାଏ ବାର୍ତ୍ତାପଠାଇ ସେମାନଙ୍କୁ କହିବୁ ଆମ ପାଇଁ ଅପେକ୍ଷା କରି ରହିବାକୁ ।'

ଷ୍ଟାନ୍‌ଲନ୍ ଡିଆଁ ମାରି କହିଲା, 'ଅଲବତ୍, ଏ ହେଉଛି ଅଉଲ୍ ନମ୍ବର ଫିକର ।'

ମୋ ଆଡ଼କୁ ଚାହିଁ ମାରାକଟ୍ କହିଲେ, 'ଏବଂ କୌଣସି ମହିଳା ଯଦି ଆମ ଅଦୃଷ୍ଟର ଭାଗୀ ହେବାକୁ ଇଚ୍ଛା କରନ୍ତି ତେବେ ତିନିଜଣ ଜାଗାରେ ଚାରି ହେଲେ ବି କିଛି ଅଟକି ଯିବନାହିଁ ।' ତାଙ୍କ ମୁହଁରେ ଦୁଷ୍ଟାମିର ହସ ଖେଳିଗଲା ।

ସ୍କ୍ୟାନ୍‌ଲନ୍ କହିଲା, 'ତା ଯଦି କହିଲେ, ଚାରି ଯଦି ହେଲା, ପାଞ୍ଚ ବା କେଉଁଠି– ଛାଡ଼, ମିଃ ହେଡ୍‌ଲେ, ଫିକରଟି ବୁଝିଲେ ତ ଏଥର । ଏଇ କଥା ଲେଖିଦିଅ । ବାସ୍, ଛ ମାସ ଭିତରେ ଆମେ ଲଣ୍ଡନର ଟେମ୍‌ସ ନଦୀରେ ଜାହାଜ ନଙ୍ଗର ପକାଇବୁ ।'

ଅତଏବ ଏଥର ଆମେ ଆମର କାଚ ଗୋଲା ଦିଓଟି ଛାଡ଼ିଦେଲୁ । ତୁମ ଆକାଶରେ ଯେମିତି ପବନ,ଆମ ଆକାଶରେ ସେମିତି ପାଣି । ଆମ ସାନ ବେଲୁନ୍ ଦିଓଟି ଉପରକୁ ଉଠିଯିବ । ଦୁଇଟିଯାକ କ'ଣ ମଝିରାସ୍ତାରେ ମାଡ଼ଖାଇ ଯିବ ? ଅସମ୍ଭବ ବା କ'ଣ ? ନା, ଆମେ ଆଶା କରିପାରୁ ଅନ୍ତତଃ ଗୋଟାଏ ପାଣି ପାରି ହୋଇ ଚାଲିଯିବ । ତାହା ଅଦୃଷ୍ଟ ହାତରେ ଛାଡ଼ିଦେଲି । ଆପାତତଃ ବିଦାୟ ।

× × × ×

ଏଇଠି ସେହି କାଚଗୋଲକ ଭିତରୁ ମିଳିଥିବା ଚିଠି ଶେଷହୋଇଛି ।

କାଚଗୋଲକର ବାର୍ତ୍ତା ଇଉରୋପରେ ପହଞ୍ଚିବା ମାତ୍ରେ ଡା: ମାରାକଟ୍ ଓ ତାଙ୍କର ସାଥୀମାନଙ୍କୁ ଉଦ୍ଧାର କରିବା ଉଦ୍ଦେଶ୍ୟରେ ଗୋଟିଏ ଅଭିଯାନ ବିନା ସୋରଶବ୍ଦରେ

ଆରମ୍ଭ ହୋଇଯାଏ । ମି: ଫେଭାରଙ୍କାର ବଦାନ୍ୟତା ସହିତ 'ମ୍ୟାରିୟନ' ନାମକ ତାଙ୍କର ବିଖ୍ୟାତ ସୌଖୀନ ଜାହାଜଟି ଏଇ ଅଭିଯାନରେ ବ୍ୟବହାର କରିବା ପାଇଁ ଦିଅନ୍ତି ଏବଂ ନିଜେ ମଧ୍ୟ ଏଇ ଅଭିଯାନରେ ଯୋଗଦିଅନ୍ତି । 'ମ୍ୟାରିୟନ୍' ଜୁନ୍ ମାସରେ ଶେରବୁର୍ଗଠାରୁ ଯାତ୍ରାକରେ ଏବଂ ସାଉଥ-ହ୍ୟାମ୍ପଟନ୍‌ରୁ ଆସୋସିୟେଟେଡ଼୍ ପ୍ରେସ୍‌ର ପ୍ରତିନିଧି ମି: କୀ: ଅଜ୍‌ବାର୍‌ନ୍ ଏବଂ ଜଣେ ଚଳଚ୍ଚିତ୍ର ଅପରେଟରକୁ ନେଇ ଆଫ୍ରିକା ଆଡ଼କୁ ଗତି କରେ । ମି: ହେଡ୍‌ଲେଙ୍କ ଲେଖାରେ ଯେଉଁ ଅକ୍ଷାଂଶ ଓ ଦ୍ରାଘିମା ନିର୍ଦ୍ଦେଶିତ ହୋଇଥିଲା ଜୁଲାଇ ପହିଲାରେ 'ମ୍ୟାରିୟନ୍' ସମୁଦ୍ରର ସେଇ ଅଞ୍ଚଳରେ ଯାଇ ଉପସ୍ଥିତ ହୁଏ ।

ଗଭୀର ସମୁଦ୍ରର ଜଳ ମାପିବା ପାଇଁ ପିୟାମୋ-ତାରର ଓଳମ ବ୍ୟବହାର କରାଯାଏ । ଜାହାଜରୁ ତାହା ଶେଷ ମୁଣ୍ଡରେ ଭାରୀ ସୀସା ଛଡ଼ା ଗୋଟିଏ ବୋତଲ ବି ଥିଲା । ସେ ବୋତଲ ଭିତରେ ଗୋଟିଏ ବାର୍ତ୍ତା ଭରତି କରି ଦିଆହେଲା । ବାର୍ତ୍ତାଟି ଏହି ରୂପ:-

'ମାନବ-ଜଗତ୍ ଆପଣମାନଙ୍କ ଲେଖାଟି ପାଇଛି । ଆମେ ଆପଣମାନଙ୍କ ସାହାଯ୍ୟ କରିବାକୁ ଉପସ୍ଥିତ । ଏଇ ବାର୍ତ୍ତାଟି ଆମେ ଆପଣମାନଙ୍କ ବେତାର ଟ୍ରାନ୍‌ସମିଟର ଜରିଆରେ ମଧ୍ୟ ପଠାଉଛୁ, ହୁଏତ ଆପଣମାନେ ତାହା ପାଇବେ । ଆମେ ଧୀରେ ଧୀରେ ଅଗ୍ରସର ହେବୁ, ଆପଣମାନେ ବୋତଲଟି ଖୋଲି ଅନୁଗ୍ରହ କରି ଆପଣମାନଙ୍କ ବାର୍ତ୍ତା ସେଥିରେ ଭରତି କରି ଦେବେ ଏବଂ ଆମେ ଆପଣମାନଙ୍କ ନିର୍ଦ୍ଦେଶାନୁସାରେ କାମ କରିବୁ ।'

ଦୁଇଦିନ ଯାବତ୍ 'ମ୍ୟାରିୟନ୍' ସେଇଠି ଆସ୍ତେ ଆସ୍ତେ ଟହଲ ମାରିଲା କିନ୍ତୁ କୌଣସି ଫଳ ହେଲାନାହିଁ । ତୃତୀୟ ଦିନ ଏକ ଅତି ଆଶ୍ଚର୍ଯ୍ୟକର ଘଟନା ଘଟିଲା । ଜାହାଜଠାରୁ କିଛି ଗଜ ଦୂରରେ ଗୋଟିଏ ସାନ ଓ ଅତି ଉଜ୍ଜ୍ୱଳ ଗୋଲକ ପାଣିରୁ ଡିଆଁ ମାରି ଶୂନ୍ୟକୁ ଉଠି ପୁଣି ସମୁଦ୍ରବକ୍ଷରେ ପଡ଼ିଲା । ଦେଖାଗଲା 'ଆରାବେଲା ଦୋଉଲସ୍'ର ଦିନ-ପଞ୍ଜିକାରେ ଯେଉଁ କାଚଗୋଲକର କଥା ଲେଖା ଅଛି ଏହା ସେହିପରି ଗୋଟିଏ । ସେଇଟିକୁ ଭାଙ୍ଗିବାକୁ ବେଶ୍ କଷ୍ଟ ହେଲା । ତା' ଭିତରେ ଥିଲା ଏଇ ବାର୍ତ୍ତାଟି ।

'ବନ୍ଧୁଗଣ, ଧନ୍ୟବାଦ । ଆମେ ଆପଣମାନଙ୍କର ଅସାମାନ୍ୟ ସହଯୋଗିତା ଓ ଉଦ୍ୟମର ବହୁ ପ୍ରଶଂସା କରୁଛୁ । ଆପଣମାନଙ୍କ ବେତାର-ବାର୍ତ୍ତା ଆମେ ଅନାୟାସରେ ଗ୍ରହଣ କରି ପାରିଛୁ । କିନ୍ତୁ ଆପଣମାନଙ୍କର ଓଳମ-ତାର ଆମେ ଧରି ପାରିଲୁ ନାହିଁ । ସ୍ରୋତ ହେତୁ ସେଟି ଉଚ୍ଚରେ ରହିଛି, ତାଛଡ଼ା ଏତେ ଦ୍ରୁତଗତିରେ ଯାଉଛି ଯେ ପାଣିର

ବାଧା ଠେଲି ଆମେ କେହି ସେତେ ଶୀଘ୍ର ଦୌଡ଼ିପାରୁନାହୁଁ । ଆମେ ଆଶା କରୁ ଆସନ୍ତା କାଲି ସକାଳ ଛ'ଟା ବେଳେ ଆମର ଦୁଃସାହସିକ ପ୍ରଚେଷ୍ଟାଟି କରିବୁ । ଆମ ଗଣନା ଅନୁସାରେ ସେଦିନ ମଙ୍ଗଳବାର, ଜୁଲାଇ ୫ । ଆମେ ସମସ୍ତେ ଏକାସଙ୍ଗେ ନ ଉଠି ଜଣ ଜଣ କରି ଉଠିବୁ । ତା'ହେଲେ ଜଣକର ସୁବିଧା ଅସୁବିଧା କଥା ଆପଣମାନେ ବେତାର ଦ୍ୱାରା ଜଣାଇ ଅନ୍ୟମାନଙ୍କୁ ସାବଧାନ କରିପାରିବେ । ପୁଣି ଥରେ ଆପଣମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛୁ । ମାରାକଟ୍, ହେଡ୍‌ଲେ, ସ୍କାନ୍‌ଲନ୍ ।'

ଏଥର ମି: ଅଲ୍‌ବାରନ୍ ବିବରଣର ସୂତ୍ରଟି ଧରିଲେ । ବେତାର ଦ୍ୱାରା ଏହା ସେ କହିଲେ ଏବଂ କେପ୍ ଭାର୍ଦେ ଠାରୁ ଇଉରୋପ ଓ ଆମେରିକାକୁ 'ରିଲେ' କରାହେଲା ।

'ଚମତ୍କାର ସକାଳଟିଏ । ନୀଳକାନ୍ତମଣି ଭଳି ଘନନୀଳ ସମୁଦ୍ର ପୋଖରୀ ଭଳି ସ୍ଥିର । ଉପରେ ଘନନୀଳ ଆକାଶର ବିରାଟ ଖିଲାଣ । 'ମ୍ୟାରିୟନ୍'ର ନାବିକମାନେ ଆଜି ବଡ଼ ସକାଳୁ ଉଠିଥିଲେ । ଅଧୀର ଭାବରେ ସମସ୍ତେ ଅପେକ୍ଷା କରୁଥିଲେ–କେଜାଣି କ'ଣ ଘଟିବ ବୋଲି । ଯେତେବେଳେ ଘଡ଼ି କଣ୍ଟା ଛ'ଟା ଆଡ଼କୁ ଆଗେଇ ଆସିଲା ସେତେବେଳେ ଆମ ପ୍ରତ୍ୟାଶା ଉତ୍କଣ୍ଠାରେ ପରିଣତ ହୋଇଛି । ଚାରିଆଡ଼କୁ ନଜର ରଖିବା ପାଇଁ ଜାହାଜର ସିଗ୍‌ନାଲ୍ ମାସ୍ତୁଲରେ ଜଣକୁ ରଖାହୋଇଥାଏ । ଛ'ଟା ବାଜିବାକୁ ପାଞ୍ଚମିନିଟ୍ ଥାଏ–ତା'ର ଚିତ୍କାର ଶୁଣାଗଲା । ଜାହାଜର ସାମନା ଆଡ଼କୁ ଅଙ୍ଗୁଳି ଦେଖାଇ ସେ କ'ଣ ଦେଖାଉଥିଲା ।

ଡେକ୍ ଉପରେ ଟଙ୍ଗାହୋଇଥିବା ଗୋଟିଏ ନୌକା ଉପରେ ମୁଁ କୌଣସିମତେ ଚଢ଼ିଗଲି । ସେଠୁ ସବୁ ବେଶ୍ ପରିଷ୍କାର ଦିଶୁଥିଲା । ଦେଖିଲି ନିଥର ପାଣି ଭିତରେ ଯେମିତି ରୂପାର ଗୋଟିଏ ବଡ଼ ବୁଦ୍‌ବୁଦ ସମୁଦ୍ରର ଗଭୀରତା ଭିତରୁ ଅତି ଦ୍ରୁତ ବେଗରେ ଉପରକୁ ଉଠି ଆସୁଚି । ଜାହାଜଠାରୁ ପ୍ରାୟ ଦୁଇଶହ ଗଜ ଦୂରରେ ତାହା ପାଣି ଭିତରୁ ଡେଇଁ ବାହାରିଲା, ଆଉ ସିଧା ଆକାଶକୁ ଉଠିଗଲ । ଦେଖିଲି ତାହା ହେଉଚି ଗୋଟିଏ ଅତି ଉଜ୍ଜ୍ୱଳ ଗୋଲକ, ତିନିଫୁଟ ଖଣ୍ଡେ ତା'ର ବ୍ୟାସ । ଅନେକ ଉପରକୁ ଉଠି ତାହା ପବନରେ ଭାସିଚାଲିଗଲା, ଠିକ୍ ପିଲାଙ୍କ ବେଲୁନ୍ ଭଳି । ସେ ଏକ ଅପରୂପ ଦୃଶ୍ୟ । ଆମର ଆଶଙ୍କା ହେଲା ଯେ ଗୋଲକଟି ଯାହାକୁ ନେଇ ଉଠିଥିଲା ସେ ହୁଏତ ରାସ୍ତା ମଝିରେ ଫିଟ ରହିଗଲା । ତତ୍‌କ୍ଷଣାତ୍ ବେତାରବାର୍ତ୍ତା ପଠାଗଲା ।

'ଆପଣଙ୍କ ଦୂତଟି ନିକଟରେ ଦେଖାଦେଇଥିଲା । ତା' ସହିତ ଆଉ କିଛି ନ ଥିଲା । ସେଇଟି ଉଡ଼ିଯାଇଚି ।'

ସାଙ୍ଗେ ସାଙ୍ଗେ ଗୋଟାଏ ନୌକା ଓହ୍ଲାଇ ଦିଆଗଲା ସବୁ ପରିସ୍ଥିତି ପାଇଁ ପ୍ରସ୍ତୁତ ରହିବାକୁ ।

'ଛ'ଟା ବାଜିବାର ଠିକ୍ ପରେ ପରେ ଆମର ପହରାଦାର ପୁଣି ଚିତ୍କାର ଛାଡ଼ିଲା ଓ ତା'ପର ମୁହୂର୍ତ୍ତରେ ଦେଖିଲୁ ସେହି ଭଳି ଆଉ ଗୋଟାଏ ରୂପେଲି ଗୋଲକ ଗଭୀର ଜଳ ଭିତରୁ ଉଠି ଆସୁଚ–ପ୍ରଥମଟି ଠାରୁ ଧୀର ଗତିରେ । ଉପରକୁ ଆସି ସେଟା ଶୂନ୍ୟରେ ଭାସିବାକୁ ଲାଗିଲା, କିନ୍ତୁ ତାହାର ବୋଝଟି ପାଣି ଦେହରେ ରହିଲା । ଦେଖାଗଲା ମାଛ ଚମଡ଼ାର ମଣାରେ ଭରତି ହୋଇ ରହିଛି ଅନେକ ବହି, କାଗଜପତ୍ର ଓ ନାନାପ୍ରକାର ଜିନିଷର ଗୋଟିଏ ବଡ଼ ବୁଜୁଚା । ସେଟାକୁ ଡେକ୍ ଉପରକୁ ଉଠାଇ ଅଣାଗଲା ଏବଂ ବେତାର ଦ୍ୱାରା ପ୍ରାପ୍ତି ସମ୍ବାଦ ପଠାଇଦିଆଗଲା । ତା'ପରେ ଅଧିକ ଉଦ୍‌ଗ୍ରୀବ ହୋଇ ଅପେକ୍ଷା କଲୁ ।

କିଛିକ୍ଷଣ ପରେ ପୁଣି ସେଇ ରୂପେଲି ବୁଦ୍‌ବୁଦ । ନିଥର ପାଣି ଚଞ୍ଚଳ ହୋଇ ଉଠିଲା । କିନ୍ତୁ ଏଥର ଚକଚକିଆ ଗୋଲକଟି ଅନେକ ଉପରକୁ ଡେଇଁ ଉଠିଲା ଏବଂ ଆମେ ଅବାକ୍ ହୋଇ ଦେଖିଲୁ ତା' ତଳେ ଝୁଲୁଛି ଗୋଟିଏ ତନ୍ୱୀ ନାରୀ ମୂର୍ତ୍ତି । ଅଳ୍ପକ୍ଷଣ ମାତ୍ର ଶୂନ୍ୟରେ ରହି ଗୋଲକଟି ପାଣିକୁ ଓହ୍ଲାଇ ପଡ଼ିଲା । ମହିଳାଟିକୁ ନୌକାରେ ଉଠାଇ ଜାହାଜ ପାଖକୁ ଅଣାଗଲା । ଦେଖିଲୁ କାଚ ଗୋଲକଟିର ଉପର ପଟରେ ଚମଡ଼ାର ଗୋଟିଏ ସାନ ପଟି ଅଛି, ଆଉ ସେଥିରୁ ବାହାରିଥିବା ଲମ୍ବ ଲମ୍ବ ପଟି ସବୁ ମହିଳାଟିର କ୍ଷୀଣ କଟିକୁ ଘେରି ରହିଥିବା ପଟି ସହିତ ସଂଯୋଜିତ କରା ହୋଇଛି । ମହିଳାଟିର ଅଣ୍ଟାଠୁ ଉପର ଅଂଶ ଗୋଟିଏ ଲମ୍ବାଳିଆ କାଚ ଢାଙ୍କୁଣି ଦ୍ୱାରା ଆବୃତ । ମୁଁ ଏହାକୁ କାଚ କହୁଚି, କିନ୍ତୁ ଏହା ମଧ ଅନ୍ୟ ଗୋଲକ ଭଳି ହାଲୁକା ସ୍ୱଚ୍ଛ ବସ୍ତୁରେ ତିଆରି । ଢାଙ୍କୁଣିଟିର ଦେହରେ ମନେହେଲା ଅନେକ ରୂପେଲି ଶିରା ଅଛି । ଇଲାଷ୍ଟିକ୍ ଦ୍ୱାରା କାନ୍ଧରେ ଓ ଅଣ୍ଟାରେ ନିବୁଜ ଭାବରେ ସେ ଢାଙ୍କୁଣିଟିକୁ ଲଗାଯାଇଛି, ତେଣୁ ପାଣି ପ୍ରବେଶ କରିପାରେ ନାହିଁ । ବାୟୁଶୋଧନ ପାଇଁ ତା' ଭିତରେ ଅଛି ଏକ ଅଭିନବ ହାଲୁକା ଯନ୍ତ୍ର ଯେପରି ଯନ୍ତ୍ର କଥା ହେଡ୍‌ଲେଙ୍କ ଲେଖାରେ ଥିଲା । ଏହି ଢାଙ୍କୁଣିଟି ଖୋଲିବା ପାଇଁ ଓ ମହିଳାଟିକୁ ଡେକ୍‌କୁ ଉଠାଇ ଆଣିବା ପାଇଁ କିଛି କଷ୍ଟ ସ୍ୱୀକାର କରିବାକୁ ପଡ଼ିଲା । ସେ ଏକାବେଳକେ ଅଜ୍ଞାନ ହୋଇ ଯାଇଥିଲେ । ବୋଧହୁଏ ପାଣି ଭିତରେ ଅତିଶୟ ଦ୍ରୁତ ଗତିରେ ଉପରକୁ ଉଠିବା ଓ ହଠାତ୍ ବାୟୁଚାପ କମିଯିବା ହେତୁ ସେ ଅଜ୍ଞାନ ହୋଇଯାଇଥିଲେ । ସେ ଅତି ଧୀରଗତିରେ ନିଃଶ୍ୱାସ ନେଉଥିଲେ । ତେଣୁ ଆଶା ହେଲା ସେ ଶୀଘ୍ର ସୁସ୍ଥ ହୋଇଯିବେ । ବାୟୁଚାପ କମିଯିବା କଥା ଏଇଥିପାଇଁ କହିଲି ଯେ ଢାଙ୍କୁଣି ଭିତରେ ଥିବା ବାୟୁଚାପ ବାହାରର ବାୟୁଚାପଠାରୁ ଅନେକ ବେଶି ଘନ । ବୁଡ଼ାଳିମାନେ ପାଣି ଭିତରେ କିଛିଦୂର ଯିବାପରେ ଏତେ ବେଶି ଚାପ ଅନୁଭବ କରନ୍ତି ଯେ ତା' ତଳକୁ ଆଉ ଯାଇ ପାରନ୍ତି ନାହିଁ । ଠିକ୍ ସେହିଭଳି ଘନ ଏହି କାଚ ଢାଙ୍କୁଣି ଭିତରେ

ବାୟୁ । ଖୁବ୍ ସମ୍ଭବ ଏ ହେଉଛନ୍ତି ସେଇ ଆଣ୍ଟଲାଣ୍ଟୀୟ ନାରୀ ଯାହାଙ୍କ କଥା ହେଡ୍‌ଲେଙ୍କ ଲେଖାରେ ସ୍ଥାନ ପାଇଚି । ବାସ୍ତବିକ ସେ ଅତ୍ୟନ୍ତ ସୁନ୍ଦରୀ । ଦେହର ରଙ୍ଗ ଯଦିଚ ଇଉରୋପୀୟଙ୍କ ତୁଳନାରେ ଈଷତ୍ ଶ୍ୟାମଳ, କିନ୍ତୁ ମୁଖର ଆକୃତି ଅତି ସୁନ୍ଦର । ସେଇ ମୁହଁରେ ପୁଣି ଏମିତି ଗୋଟିଏ ବୈଶିଷ୍ଟ୍ୟ ଅଛି ଯେଉଁଥିପାଇଁ ତାଙ୍କୁ ସମୀହ କରିବାକୁ ହୁଏ । ଘନକୃଷ୍ଣ ଦୀର୍ଘ କେଶ ଓ ଦୀର୍ଘାୟତ ଆଖି । ସେଇ ଆଖି ମେଲି ଅପୂର୍ବ ଦୃଷ୍ଟିରେ ସେ ଚାରିଆଡ଼କୁ ଦୃଷ୍ଟି ପକାଇଲେ । ତାଙ୍କ କଳା କେଶରେ ଏବଂ ମଖନ ରଙ୍ଗର ପୋଷାକରେ ଇନ୍ଦ୍ରଧନୁ ରଙ୍ଗର ଶାମୁକାମାନ ସଜାଯାଇଚି । ଅତଳ ସିନ୍ଧୁର ଏକ ଜଳକନ୍ୟାର ଏହାଠାରୁ ବଳି ପରିପୂର୍ଣ୍ଣ ରୂପ କଳ୍ପନା କରିହେବ ନାହିଁ । ସାଗର ଚିରନ୍ତନ ରହସ୍ୟର ଏ ଯେପରି ମୂର୍ତ୍ତିମତୀ ମୋହିନୀ ମାୟା !

'କ୍ରମେ ତାଙ୍କର ସମ୍ପୂର୍ଣ୍ଣ ଜ୍ଞାନ ଫେରିଆସିଲା । ହଠାତ୍ ସେ ବନହରିଣୀ ପରି ଲଘୁ ଗତିରେ ଡେକ୍ ଧାରକୁ ଦୌଡ଼ିଗଲେ ଓ ଡାକିଲେ 'ସାଇରାସ୍ ! ସାଇରାସ୍ !'

ସମୁଦ୍ର ତଳେ ଥିବା ଲୋକମାନଙ୍କୁ ଆମେ ସେତେବେଳକୁ ବେତାର ଦ୍ୱାରା ଜଣାଇ ଦେଇଥାଉ ଯେ ମହିଳାଟି ନିରାପଦରେ ପହଞ୍ଚିଛନ୍ତି । ଏଥର ସେମାନେ ମଧ୍ୟ ଜଣକ ପରେ ଜଣେ ଆସି ପହଞ୍ଚିଲେ । ସେମାନେ ପାଣି ଉପରୁ ତିରିଶ ଚାଳିଶ ଫୁଟ ଉପରକୁ ଉଠିଯାଆନ୍ତି ଏବଂ ଆମେ ତାଙ୍କୁ ଉଠାଇ ନେଇ ଆସୁ । ତିନିଜଣଯାକ ଅଜ୍ଞାନ ଅବସ୍ଥାରେ ଥିଲେ । ସ୍କାନ୍‌ଲନ୍‌ଙ୍କ ନାକ କାନ ବାଟେ ରକ୍ତ ବାହାରୁଥିଲା । ଯାହାହେଉ ଘଣ୍ଟାକ ଭିତରେ ସେମାନେ ଟଳି ଟଳି ଛିଡ଼ାହେଲେ । ଦଳେ ହସି ହସି ସ୍କାନ୍‌ଲନ୍‌ଙ୍କୁ ପାନଶାଳା ଭିତରକୁ ନେଇଗଲେ । ସେମାନଙ୍କ ବେଦମ ହସର ଶବ୍ଦ ଏ ପର୍ଯ୍ୟନ୍ତ ଶୁଭୁଚି ଏବଂ ତଦ୍ୱାରା ଏହି ବେତାର ଭାଷଣଟିରେ ଯଥେଷ୍ଟ ବ୍ୟାଘାତ ହେଉଚ । ଡ: ମାରାକଟ୍ ଯାଇ କାଗଜ ବୁକୁଚାଟି ଅଧିକାର କରି ବସିଲେ ଏବଂ ତା' ଭିତରୁ ବୀଜଗଣିତର ଅଙ୍କ-କଷା ଖଣ୍ଡେ କାଗଜ ବାହାର କରି ସେଇ ଶିଡ଼ିବାଟେ ଓହ୍ଲାଇ ଅଦୃଶ୍ୟ ହୋଇଗଲେ । ସାଇରାସ୍ ହେଡ୍‌ଲେ ଦୌଡ଼ିଗଲେ ପୃଥିବୀକୁ ଅଚିହ୍ନା ତାଙ୍କର ସେଇ ସାଥୀ ପାଖକୁ ।

'ଆଶାକରେ ଆମର ଅଳ୍ପଶକ୍ତିସମ୍ପନ୍ନ ବେତାର ସତ୍ତ୍ୱେ ଆପଣମାନଙ୍କର ଶୁଣିବାରେ ବିଶେଷ ଅସୁବିଧା ହେଉନାହିଁ । ଆଜି ଏତିକି କହି ଶେଷ କରୁଛି ଯେ ସମସ୍ତଙ୍କ ଆଶା ଅନୁରୂପ ଏହି ଅତ୍ୟାଶ୍ଚର୍ଯ୍ୟ ଅଭିଯାନ କଥା ସ୍ୱୟଂ ଅଭିଯାତ୍ରୀମାନଙ୍କ ମୁହଁରୁ ଆହୁରି ବିଶଦ ଭାବରେ ଶୁଣିପାରିବେ ।'

—

## ନଅ

ଆଟଲାଣ୍ଟିକ୍ ମହାସାଗର ତଳର ଅଦ୍ଭୁତ ଅଭିଜ୍ଞତା ଲାଭକରି ଫେରିବା ପରେ ଅନେକ ଆମକୁ ପତ୍ର ଲେଖିଛନ୍ତି–ମୋତେ (ଅର୍ଥାତ୍ ଅକ୍‌ସଫୋର୍ଡ୍‌ର ରେଡ୍‌ସ୍ ସ୍କଲାର ସାଇରାସ୍ ହେଡ୍‌ଲେକ୍କୁ), ପ୍ରଫେସର୍ ମାରାକଟ୍‌ଙ୍କୁ ଏବଂ ବିଲ୍ ସ୍କାନ୍‌ଲନ୍‌ଙ୍କୁ ମଧ୍ୟ । କ୍ୟାନାରି ଦ୍ୱୀପପୁଞ୍ଜର ୨୦୦ ମାଇଲ ଦକ୍ଷିଣ-ପଶ୍ଚିମ ଦିଗରେ ଏକ ସ୍ଥାନରେ ଆମେ ସମୁଦ୍ର ଭିତରକୁ ଓହ୍ଲାଇଥିଲୁ । ତା'ଫଳରେ କେବଳ ଯେ ଗଭୀର ସମୁଦ୍ରର ପ୍ରାଣୀ ଓ ପାଣିର ଚାପ ବିଷୟରେ ଆମର ଧାରଣା ବଦଳିଛି ତା'ନୁହେଁ, ଏହା ମଧ୍ୟ ସାବ୍ୟସ୍ତ ହୋଇଛି ଯେ ଗୋଟିଏ ପୁରାତନ ସଭ୍ୟତା ଅସମ୍ଭବ ପ୍ରକାର କଠିନ ଅବସ୍ଥା ମଧ୍ୟରେ ବି ଆଜି ପର୍ଯ୍ୟନ୍ତ ବଞ୍ଚିରହିଛି । ସମୁଦ୍ରତଳୁ ପଠାଇଥିବା ମୋର ବିବରଣୀରେ ଯାହା ଯାହା ଲେଖିଚି ତାହା କେବଳ ଆଭାସ ହେଲେ ବି ପ୍ରାୟ ସବୁ କଥା ସେଥିରେ ଅଛି । କୌଣସି କୌଣସି କଥା ଅବଶ୍ୟ ସେଥିରେ ସ୍ଥାନ ପାଇ ନାହିଁ । ସବୁଠାରୁ ଉଲ୍ଲେଖଯୋଗ୍ୟ ବିଷୟ ପ୍ରଭୁ ଘୋରଦର୍ଶନଙ୍କ କଥା ତା'ଭିତରେ ସ୍ଥାନ ପାଇନାହିଁ । ସେ କଥା ଏତେ ଅବିଶ୍ୱାସ୍ୟ ଭାବରେ ଅଦ୍ଭୁତ ଯେ ଆମେ ମନେକଲୁ ଆପାତତଃ ସେ କଥା ନ ଜଣାଇବା ହିଁ ଭଲ । ତେବେ ବର୍ତ୍ତମାନ ଯେତେବେଳେ ବିଜ୍ଞାନୀମାନେ ଆମର ସିଦ୍ଧାନ୍ତଗୁଡ଼ିକ ଗ୍ରହଣ କରିଛନ୍ତି ଏବଂ ସମାଜ ଗ୍ରହଣ କରିଚି ମୋର ଆଟଲାଣ୍ଟିୟ ବଧୂକୁ, ସେତେବେଳେ ସେ କାହାଣୀ ବର୍ତ୍ତମାନ କହିବାକୁ ସାହସ କରୁଛି । ବାସ୍ତବିକ ଡକ୍‌ଟର ମାରାକଟ୍‌ଙ୍କ ଅନ୍ୟସାଧାରଣ ବ୍ୟକ୍ତିତ୍ୱ ପାଇଁ ଆମେ ସେଠି ଏପରି କୀର୍ତ୍ତି ରଖି ଆସିପାରଚୁ ଯେ ଆମ କଥା ତାଙ୍କ ଇତିହାସରେ ବୋଧହୁଏ ଦେବତାର ଆବିର୍ଭାବ ରୂପେହିଁ ଲିପିବଦ୍ଧ ରହିବ । ଆମେ ଯେ ଫେରି ଆସିବୁ ତା' ସେମାନେ ଜାଣିନଥିଲେ, ଜାଣିଥିଲେ ସେମାନେ ଖୁବ୍ ସମ୍ଭବ ବାଧା ଦେଇଥାନ୍ତେ । ହୁଏତ ଇତିମଧ୍ୟରେ ସେଠି ଲୋକଙ୍କ ମୁହେଁ ମୁହେଁ ଗୋଟିଏ କିମ୍ବଦନ୍ତୀ ସ୍ଥାପିତ ହୋଇଯିବଣି ଯେ ଆମେ ସ୍ୱର୍ଗରୁ ସେଠାରେ ଅବତୀର୍ଣ୍ଣ ହୋଇଥିଲୁ ଓ ପୁଣି ସ୍ୱର୍ଗକୁ ଫେରିଯାଇଚୁ; ସଙ୍ଗରେ ନେଇ ଆସିଚ୍ ସେମାନଙ୍କର ସବୁଠାରୁ ମଧୁର ସବୁଠାରୁ ସୁନ୍ଦର ଫୁଲଟି ।

ଯାହାହେଉ, ପ୍ରଭୁ ଘୋରଦର୍ଶନଙ୍କ କାହାଣୀ କହିବା ଆଗରୁ ଆଉ କେତେଗୁଡ଼ିଏ ଅଦ୍ଭୁତ ବ୍ୟାପାର ବିଷୟରେ କହିବି । ବାସ୍ତବିକ ବେଳେ ବେଳେ ମନେହୁଏ ମାରାକଟ୍ ଡୀପ୍‌ରେ ଆଉ କିଛି ଦିନ ରହିଯାଇଥିଲେ ଭଲହୋଇଥାନ୍ତା । ବହୁ ରହସ୍ୟ ଥିଲା ସେଠି ।

ଦିନେ ହଠାତ୍ ଏକ ସତର୍କତାର ଚହଳ ପଡ଼ିଗଲା ଏବଂ ଆମେ ସମସ୍ତେ ଅମ୍ଳଜାନ ମୁଖା ପିନ୍ଧି ସମୁଦ୍ରର ପଙ୍କଶଯ୍ୟାକୁ ଦୌଡ଼ିଗଲୁ । ଆଖ ପାଖ ଲୋକମାନଙ୍କ ମୁହଁରେ

ଆତଙ୍କର ଛାୟା ଏତେ ସ୍ପଷ୍ଟ ଯେ ବୁଝିବାକୁ ବାକି ରହିଲା ନାହିଁ ନିଶ୍ଚୟ କିଛି ବିପଦ ଉପସ୍ଥିତ । କିଛି ବାଟ ଯାଇ ଦେଖିଲୁ କୋଇଲାଖଣିର ସେହି ଗ୍ରୀସୀୟ ଶ୍ରମିକମାନେ ଆମ ଉପନିବେଶର ପ୍ରବେଶଦ୍ୱାର ଆଡ଼େ ପ୍ରାଣମୂର୍ଚ୍ଛା ଛୁଟୁଛନ୍ତି । ସମସ୍ତଙ୍କୁ ଘରଭିତରେ ପ୍ରବେଶ କରାଇବା ପରେ ଚାରିଆଡ଼କୁ ଅନାଇଁ ଭୟର କାରଣ କ'ଣ ବୁଝିବାକୁ ଚେଷ୍ଟାକଲି । ଦୂରରେ ଯୋଡ଼ାଏ ସାବ୍‌ଜିଆ ଧୂଆଁର କୁଣ୍ଡଳୀ ଛଡ଼ା ଆଉ କିଛି ନଜରରେ ପଡ଼ିଲା ନାହିଁ । ପ୍ରତ୍ୟେକଟିର ମଧ୍ୟସ୍ଥଳ ଉଜ୍ଜ୍ୱଳ ଏବଂ ପ୍ରାନ୍ତଗୁଡ଼ିକ ଖଣ୍ଡିଆ ଖଣ୍ଡିଆ ଅସ୍ପଷ୍ଟ, ଯେପରି ଦୁଇଖଣ୍ଡ ସାନ ବଉଦ ଭଳି ଦିଶୁଥାଏ । ବଉଦ ଭଳି ମଧ୍ୟ ସେ ଦୁଇଟି ଆମ ଆଡ଼କୁ ଭାସି ଆସୁଥାଏ । ସେପର୍ଯ୍ୟନ୍ତ ସେ ଦୁଇଟି ପ୍ରାୟ ଅଧମାଇଲିଏ ଦୂରରେ ଥିଲା । କିନ୍ତୁ ଆମ ସାଥୀମାନେ ମହା ଆତଙ୍କରେ ଆମକୁ ନେଇ ଶୀଘ୍ର ଘର ଭିତରକୁ ପଶିଗଲେ । ଦୁଆରବନ୍ଧ ଉପରେ ଗୋଟାଏ ଦଶଫୁଟ ଲମ୍ବ ଓ ଦୁଇଫୁଟ ଚଉଡ଼ାର ବଡ଼ ସ୍ଫଟିକ ଖଣ୍ଡଟିଏ ଖଞ୍ଜା ରହିଥାଏ, ବାହାରକୁ ଆଲୁଅ ପକାଇବାର ବ୍ୟବସ୍ଥା ମଧ୍ୟ ଥାଏ । ଉପରକୁ ଉଠିବା ଶିଡ଼ି ଅଛି । ସେଇ ଶିଡ଼ିବାଟେ ଆମେ ଉଠି ସ୍ଫଟିକ ବାଟେ ବାହାରକୁ ଅନାଇଲୁ । ଦେଖିଲୁ ସେଇ ଅଦ୍ଭୁତ ଉଜ୍ଜ୍ୱଳ ସବୁଜ ଆଲୁଅ କୁଣ୍ଡଳୀ ଦୁଆର ସାମନାରେ ଥମିଲା । ସେ ଦୁଇଟିରୁ ଗୋଟାଏ ସ୍ଫଟିକ ଝରକା ସିଧା ଉଚ୍ଚକୁ ଉଠିବାକୁ ଲାଗିଲା । ମନେହେଲା ଗୋଟିଏ ଆଲୋକ ଶିଖା ଥରି ଥରି ଉପରକୁ ଉଠି ଆସୁଛି । ଠିକ୍ ସେତିକିବେଳେ ଆମ ସାଥୀଭିତରୁ ଜଣେ ମୋତେ ଦୃଷ୍ଟି-ରେଖା ତଳକୁ ଟାଣି ଆଣିଲା । କିନ୍ତୁ ମୋ ମୁଣ୍ଡର କେତେଟା ବାଳ ମାତ୍ର ଝରକା ବାଟେ ଦିଶୁଥିଲା । ସେ କେତୋଟି କେଶ ଆଜି ପର୍ଯ୍ୟନ୍ତ ଶୁଷ୍କ ବିବର୍ଣ୍ଣ ଅବସ୍ଥାରେ ଅଛି । ନାନାପ୍ରକାର ଭୟାର୍ତ୍ତ କଥା ଭିତରୁ ''ପ୍ର୍ୟାକ୍‌ସା'' କଥାରୁ ବୁଝିଲି ତାହାହିଁ ସେ ଅଦ୍ଭୁତ ଜୀବର ନାମ । ଯେଉଁ ଜଣେ ମାତ୍ର ଲୋକ ଏହି ବ୍ୟାପାରରେ ଆନନ୍ଦର ସୁରାକ ପାଇଲେ ସେ ହେଉଛନ୍ତି ପ୍ରଫେସର ମାରାକଟ୍ । ଗୋଟିଏ ସାନ ଜାଲ ଓ ଗୋଟିଏ କାଚ ପାତ୍ର ସହ ସେ ତ ବାହାରି ପଡ଼ିବା ଉପରେ । ବହୁ କଷ୍ଟରେ ତାଙ୍କୁ ଏଇ ପାଗଳାମିରୁ ନିରସ୍ତ କରାଗଲା । ତାଙ୍କର ମନ୍ତବ୍ୟ, 'ଏ ଗୋଟିଏ ନୂତନ ପ୍ରାଣୀ ପର୍ଯ୍ୟାୟ । ଏହାର କିଛି ଅଂଶ ଜୈବ ଏବଂ ବାକି ଅଂଶ ଗ୍ୟାସୀୟ । କିନ୍ତୁ ସ୍ପଷ୍ଟ ଅନୁମେୟ ଏହାର ବୁଦ୍ଧିବୃତ୍ତି ଅଛି ।'

ଏହାର ଦୁଇଦିନ ପରେ ଥରେ ସମୁଦ୍ରତଳେ ବୁଲିବାକୁ ବାହାରି ଆମେ ଜଣେ କୋଇଲା ଶ୍ରମିକର ମୃତଦେହ ପଡ଼ିଥିବା ଦେଖିଲୁ । ତା'ର କାଚଗୋଲକଟି ଭାଙ୍ଗି ଯାଇଥିଲା । ବିଚାରା ପଳାଇ ଯାଇ ପାରି ନଥିବାରୁ ସେଇ ଦୁଇପ୍ରାଣୀ କବଳରେ ପଡ଼ିଥିଲା । ତାର କାଚଗୋଲକଟି ଭାଙ୍ଗି ଯାଇଥିବାରୁ ସେହି ବାୟବୀୟ ଜୀବର ଶକ୍ତି ବିଷୟରେ ଧାରଣା ହେଲା । ସେମାନେ ଲୋକଟିର ଆଖି ଦୁଇଟି କେବଳ ଓପାଡ଼ି ନେଇଥିଲେ, ଶରୀରର ଅନ୍ୟ କୌଣସି ସ୍ଥାନରେ ଆଘାତର ଚିହ୍ନ ନାହିଁ ।

ଫେରିବା ପରେ ମାରାକଟ୍ କହିଲେ, 'ନିତାନ୍ତ ଏକଭୋଜୀ ଜୀବ । ନିଉଜିଲ୍ୟାଣ୍ଡରେ ଏକପ୍ରକାର ଶିକାରୀ ତୋତା ଅଛନ୍ତି ଯେଉଁମାନେ ମେଣ୍ଢାଛୁଆ ଶିକାର କରନ୍ତି କେବଳ ତାହାର ପେଟ ଭିତରର ଗୋଟିଏ ବିଶେଷ ସ୍ଥାନର ଚର୍ବିଟିକକ ଖାଇବା ପାଇଁ । ସେମିତି ଏଇ ଜୀବଟି ମଣିଷ ମାରେ କେବଳ ଆଖି ଦିଓଟି ପାଇଁ ।'

ଆଉ ଗୋଟିଏ ଅଦ୍ଭୁତ ଜନ୍ତୁ କଥା କୁହେ । ଅନେକ ଥର ଆମେ ଦେଖିଛୁ ସମୁଦ୍ର ତଳର ନରମ ପଙ୍କ ଉପରେ କିଏ ଯେମିତି ସିଆର କାଟି ଯାଇଚି, ଯେମିତିକି ଗୋଟାଏ ପିମ୍ପା ଗଡ଼ି ଗଡ଼ି ଯାଇଚି । ସେଟା କ'ଣ ବୋଲି ପଚାରିବାରୁ ତା'ର ଉତ୍ତରରେ ଆମର ଆଣ୍ଟଲାଣ୍ଟୀୟ ବନ୍ଧୁମାନେ ଜିଭ ଓ ତାଲୁ ସଙ୍ଘର୍ଷରେ ଯେଉଁ ଶବ୍ଦ କଲେ ତାହାର ନିକଟତମ ଭାଷାନ୍ତର ହେବ 'କ୍ଲିକ୍‌ସଚକ୍' । ସେ ଜନ୍ତୁର ଚେହେରାଟି ମୋଟାମୋଟି କିପ୍ରକାର ତା' ମଧ୍ୟ ଜାଣିପାରିଲୁ ତାଙ୍କର ସେହି ଆଶ୍ଚର୍ଯ୍ୟ ଚିନ୍ତା ପ୍ରତିଫଳକ ସାହାଯ୍ୟରେ । ପ୍ରଫେସର ସେଟାକୁ କେବଳ ଏକ ଜାତିର ଖୋଳପାହୀନ ସାମୁଦ୍ରିକ ଗେଣ୍ଡାର ଏକ ବିରାଟ ସଂସ୍କରଣ ଛାଡ଼ ଆଉ କିଛି କହିପାରିଲେ ନାହିଁ । ଗୋଟିଏ ଅତିକାୟ ସାଁବାଳୁଆ ଭଳି ତାହାର ଚେହେରା । ସମସ୍ତ ଦେହଟି ମୋଟା କର୍କଶ ଲୋମ ଦ୍ୱାରା ଆବୃତ, କିନ୍ତୁ ଆଖି ଦୁଇଟି ଲମ୍ବ ବୃନ୍ତ ଉପରେ ଥୁଆହୋଇଚି । ଆମର ବନ୍ଧୁମାନଙ୍କର ଚେହେରାରୁ ବୁଝିଲି ସେଟା ଗୋଟାଏ ଅତି ଭୟଙ୍କର ଜାନୁଆର ।

କିନ୍ତୁ ପ୍ରଫେସର ମାରାକଟ୍‌ଙ୍କୁ ଜାଣିବା ଲୋକର ବୁଝିବାକୁ ବାକି ନଥିବ ଯେ ଏହା ଦ୍ୱାରା ତାଙ୍କର ବୈଜ୍ଞାନିକ କୌତୂହଳକୁ ଆହୁରି ଉସୁକାଇଦିଆଗଲା । ଏହି ଅଜଣା ଉଦ୍ଭଟ ପ୍ରାଣୀଟି ଠିକ୍ କେଉଁ ପ୍ରଜାତି ଓ ଉପଜାତି ଅନ୍ତର୍ଭୁକ୍ତ ତାହା ସ୍ଥିର କରିନପାରିବା ପର୍ଯ୍ୟନ୍ତ ସେ ସ୍ଥିର ରହିପାରିବେ ନାହିଁ । ପୁଣି ଥରେ ଯେଉଁଦିନ ସାଗରତଳେ ଆମେ ସେହି ଉଦ୍ଭଟ ଜନ୍ତୁର ସ୍ପଷ୍ଟ ଚିହ୍ନ ଦେଖିବାକୁ ପାଇଲୁ ସେତେବେଳେ ତାଙ୍କୁ ଆଉ ବାଧା ଦେବା ଅସମ୍ଭବ ହେଲା । ଯେଉଁ ଆଗ୍ନେୟଶିଳା ଖଣ୍ଡ ଓ ଅନାବନା ଗଛର ଜଙ୍ଗଲ ଭିତରୁ ସେ ଚିହ୍ନଟା ବାହାରିଛି ବୋଲି ମନେହେଲା ସେ ସିଧା ସେଇ ଆଡ଼କୁ ଚାଲିବାକୁ ଲାଗିଲେ । ସେ ଆଡ଼ର ଆବୁଡ଼ା ଖାବୁଡ଼ା ଜମିରେ ଅବଶ୍ୟ ସେ ଚିହ୍ନ ଆମେ ଆଉ ଦେଖିବାକୁ ପାଇଲୁ ନାହିଁ, କିନ୍ତୁ ପ୍ରାକୃତିକ ନଳା ଭଳି ଗୋଟିଏ ଖାଇ ଦେଖିବାକୁ ପାଇଲୁ ଯାହାକି ମନେହେଲା ସେଇ ବିଚିତ୍ର ଜାନୁଆରର ବାସସ୍ଥାନକୁ ଯାଇଚି । ଆମ ତିନିଜଣଙ୍କ ହାତରେ ସେହି ଆଟ୍‌ଲାଣ୍ଟୀୟ ବଲ୍ଲମ ଥିଲା, କିନ୍ତୁ ଅଜଣା ବିପଦ ସହିତ ଯୁଦ୍ଧକରିବା ପାଇଁ ସେ ସବୁ ଯେ କାର୍ଯ୍ୟକାରୀ ହେବ ତାହା ବିଶ୍ୱାସ ନଥିଲା । ଯାହାହେଉ, ପ୍ରଫେସରଙ୍କୁ ତ ଆଉ ଏକା ଛାଡ଼ି ଦେଇ ହେବ ନାହିଁ, ତେଣୁ ତାଙ୍କ ପଛେ ପଛେ ଯିବା ଛଡ଼ା ଆମର ଗତ୍ୟନ୍ତର ନଥିଲା ।

ସେଇ ଅନାବନା ଜଙ୍ଗଲରେ କେତେ ପ୍ରକାର ସାନ ସାନ ଜୀବ, ଆଉ କେତେ ପ୍ରକାର ରଙ୍ଗ ତାଙ୍କର ସେ ସବୁ ଦେଖିବାକୁ ଯେତିକି ସୁନ୍ଦର, ବିଜ୍ଞାନୀଦତ୍ତ ସେମାନଙ୍କର

ନାଁ ଗୁଡ଼ିକ ସେତିକି ଅଖାଡୁଆ । ଉଠାଣିରେ ଆମେ ଧୀରେ ଧୀରେ ଉଠୁଥିଲୁ । ଆମେ ଯା'କୁ ଖୋଜୁଥିଲୁ ହଠାତ୍ ତା'ର ଦର୍ଶନ ମିଳିଲା । ସେ ଚେହେରା ଦେଖି ଯେ ମନରେ ଭରସା ପାଇଲୁ ତା' ନୁହେଁ । ଆଗ୍ନେୟ ଶିଳାର ଗୋଟାଏ ଫାଟ ଭିତରୁ ତା' ଦେହର ଅଧେ ବାହାରିଥାଏ । ପ୍ରାୟ ପାଞ୍ଚଫୁଟ ସରିକି ଦେହ ଆମ ନଜରରେ ପଡ଼ିଲା । ଆଖି ଦୁଇଟି ତା'ର ଗୋଟିଏ ଗୋଟିଏ ଚାହା ଡିଶ୍ ଭଳି ବଡ଼, ହଳଦିଆ ମଣି ଭଳି ଜଳୁଥାଏ । ଆମ ଶବ୍ଦ ପାଇ ସେ ଲମ୍ବ ଲମ୍ବ ଦୁଇଟା ବୃନ୍ତ ଉପରେ ଥିବା ଥିବା ସେଇ ଆଖି ଦୁଇଟାକୁ ଧୀରେ ଧୀରେ ଆମ ଆଡ଼କୁ ବୁଲାଇଲା । ତା'ପରେ ଜନ୍ତୁଟା ଠିକ୍ ସାଁବାଲୁଆ ଭଳି ଦେହରେ ଢେଉ ଖେଳାଇ ଧୀରେ ଧୀରେ ତା' ଗାତରୁ ବାହାରିଲା । ଆମମାନଙ୍କୁ ଭଲକରି ଦେଖିବା ପାଇଁ ସେ ତା'ର ମୁଣ୍ଡଟାକୁ ପ୍ରାୟ ଚାରିଫୁଟ ଖଣ୍ଡେ ଉପରକୁ ଟେକିଲା । ସେତେବେଳେ ଲକ୍ଷ୍ୟକଲି ତା'ର ଗଳାର ଦୁଇ ପଟେ ଟେନିସ୍‌ଜୋତାର ତଳ ଭଳି ଢେଉ-ଢେଉକା ଦୁଇଟି ଜିନିଷ ଲାଗିଛି । ସେ ଦି'ଟା କ'ଣ ହୋଇପାରେ ଭାବି ପାରିଲି ନାହିଁ । ସେତେବେଳେ ଜାଣିନଥିଲି ଯେ ଟିକିଏ ପରେ ତାକୁ ଅଙ୍ଗେ ଲିଭାଇବାକୁ ପଡ଼ିବ ।

ସେତେବେଳକୁ ଡ: ମାରାକଟ୍ ତାଙ୍କର ବଲ୍ଲମଟି ବାଗେଇ ଦୃଢ଼ ଭାବରେ ଛିଡ଼ା ହୋଇଥାନ୍ତି । ତାଙ୍କ ମୁହଁରେ ଅତିଶୟ ଦୃଢ଼ ସଂକଳ୍ପ ପରିସ୍ଫୁଟ । ସ୍ପଷ୍ଟ ଜଣାପଡୁଥାଏ ପ୍ରାଣିବୃତ୍ତାନ୍ତର ଗୋଟିଏ ଦୁର୍ଲଭ ନମୁନା ଦେଖି ଭୟ ତାଙ୍କ ମନରୁ ପୋଛି ହୋଇଯାଇଛି । ସ୍କାନ୍‌ଲନ୍ ଓ ମୁଁ ନିରୁପାୟ ହୋଇ ତାଙ୍କ ଦୁଇପଟେ ଛିଡ଼ାହେଲୁ । ଜନ୍ତୁଟା କିଛିକ୍ଷଣ ଆମକୁ ସେମିତି ଅନାଇ ପାହାଡ଼ର ଢାଲୁ ବାହି ଅଦ୍ଭୁତ ଭଙ୍ଗୀରେ ଆସବାକୁ ଲାଗିଲା । ମଝିରେ ମଝିରେ ସେ ତାହାର ଦୁଇଟି ବିରାଟ ଆଖି ଆମ ଆଡ଼କୁ ଫେରାଇ ଦେଖିନେଉଥିଲା ଆମେ କ'ଣ କରୁଛୁ । ଜନ୍ତୁଟା ଏଡ଼େ ଆସ୍ତେ ଆସୁଥିଲା ଯେ ଆମର ମନେହେଲା ଯେକୌଣସି ସମୟରେ ଆମେ ତାକୁ ପଛରେ ପକାଇ ଦୌଡ଼ି ଯାଇପାରୁ । କିନ୍ତୁ ଆମେ ଯେ ମୃତ୍ୟୁର ଅତି ନିକଟରେ ଛିଡ଼ାହୋଇଛୁ ତାହା ସେତେବେଳ ପର୍ଯ୍ୟନ୍ତ ଆମର ଧାରଣା ନଥାଏ ।

ଆମଠାରୁ ସେ ଅନ୍ଦାଜ ଷାଠିଏ ଗଜ ଦୂରରେ ଥିବାବେଳେ ଗୋଟାଏ ବଡ଼ ମାଛ ଜଙ୍ଗଲରୁ ବାହାରି ଧୀରେ ଧୀରେ ପହଁରି ସେହି ଜନ୍ତୁ ଓ ଆମ ମଝିରେ ଉପସ୍ଥିତ ହେଲା । ତା'ପରେ ହଠାତ୍ ଜଳକୁ ଆଲୋଡ଼ିତ କରି ଗୋଟାଏ ଡିଆଁ ମାରିଲା । ଠିକ୍ ସେତିକିବେଳେ ଆମେ ସର୍ବାଙ୍ଗରେ ଗୋଟିଏ ତୀବ୍ର ଯନ୍ତ୍ରଣା ଅନୁଭବ କଲୁ । ସମସ୍ତ ଦେହଟା ଝିମ୍‌ଝିମ୍ ହୋଇଗଲା, ଆଣ୍ଠୁ ଭାଙ୍ଗିପଡ଼ିବା ଭଳି ଲାଗିଲା । ଦେଖିଲୁ ମାଛଟା ଓଲଟି ଆସ୍ତେ ଆସ୍ତେ ତଳେ ପଡ଼ିଲା, ତା' ଦେହରେ ଆଉ ଜୀବନ ନଥାଏ । ବୃଦ୍ଧ ମାରାକଟ୍ ଯେମିତି ଅସୀମ ସାହସୀ ସେମିତି ସତର୍କ ମଧ୍ୟ । ନିମିଷକେ ସେ ବୁଝିପାରିଲେ

ବ୍ୟାପାରଟି କ'ଣ । ଆମେ ଯେଉଁ ଜୀବର ଗତିବିଧି ପ୍ରଣିଧାନ କରୁଥିଲୁ ସେ ଜୀବଟି ନିଜ ଖାଦ୍ୟ ଶିକାର କରେ ବିଦ୍ୟୁତ ଢେଉର ଆଘାତରେ । ଆମ ବଲ୍ଲମ କମାଣ ପାଖରେ ଯାହା ଏହା ପାଖରେ ସେଇୟା । ଯଦି ଦୈବାତ୍ ମାଛଟା ମଝିକୁ ଆସି ବିଦ୍ୟୁତ୍‌ର ବାଣଟି ନିଜ ଦେହକୁ ଟାଣିନେଇନଥାନ୍ତା ତେବେ ତା'ର ଦଶା ଯାହାହେଲା ଆମର ଦଶା ସେଇୟା ହୋଇଥାନ୍ତା । ଆମେ ପ୍ରାଣପଣ ସେଠୁ ଦୌଡ଼ିବାକୁ ଲାଗିଲୁ । ଦୌଡ଼ୁ ଦୌଡ଼ୁ ଏହି ସିଦ୍ଧାନ୍ତ କଲୁ ଯେ ଅତଃପର ଏହି ଅତିକାୟ ସମୁଦ୍ରକୀଟକୁ କଠୋର ନିଃସଙ୍ଗତା ମଧ୍ୟରେ ଛାଡ଼ିଦେବାହିଁ ଉଚିତ ହେବ ।

ଏସବୁ ହେଲା ସମୁଦ୍ରର ଅତି ଗଭୀର ଅଞ୍ଚଳର ବଡ଼ ବଡ଼ ବିପଦମାନଙ୍କର କେତୋଟି ନମୁନା । ଆଉ ଗୋଟିଏ ହେଉଚି ଏକପ୍ରକାରର ସାନ ମାଛ । ପ୍ରଫେସର ତା ନାମ ରଖିଛନ୍ତି ଔଦକ-ହିଂସ୍ରକ । ମାଛଗୁଡ଼ିକର ରଙ୍ଗ ନାଲି, ହେରିଂ ମାଛଠାରୁ ବେଶି ବଡ଼ ହେବ ନାହିଁ । ମୁହଁଟା ବଡ଼ ଆଉ ସେଥିରେ ମାରାତ୍ମକ ଦୁଇ ଧାଡ଼ି ଦାନ୍ତ । ସାଧାରଣତଃ ସେଗୁଡ଼ିକ ନିରୀହ, କିନ୍ତୁ କେଉଁଠି ସାମାନ୍ୟ ରକ୍ତପାତ ହେବାମାତ୍ରକେ ସେ ଯେତେ ସାମାନ୍ୟ ହେଉ—ସେମାନେ ଆସି ପଡ଼ିଥାନ୍ତି ସେଠି । ସେତେବେଳେ ଆଉ କୌଣସି ଉପାୟ ରହେ ନାହିଁ । ଦଳ ଦଳ ମାଛ ଆସି ଆଖି ପିଛୁଳାକେ ଖିନିଭିନି କରି ଖାଇଯିବେ । ଆମେ କୋଇଲା ଖଣିରେ ଏମିତି ଏକ ଭୟଙ୍କର ଦୃଶ୍ୟ ଦେଖିଥିଲୁ । ଗୋଟିଏ ଶ୍ରମିକର ହାତ କୌଣସି କାରଣରୁ ସାମାନ୍ୟ କଟିଗଲା । ବାସ୍, ଚାରିଆଡ଼ରୁ ହଜାର ହଜାର ମାଛ ମାଡ଼ି ଆସି ତା' ଉପରେ ପଡ଼ିଲେ । ସେ ନିଜେ ଓ ତା' ସାଙ୍ଗମାନେ ଗଇଁତ ଓ କୋଦାଳ ଦ୍ୱାରା ସେମାନଙ୍କୁ ନିକାଲିବାର ପ୍ରାଣପଣ ଚେଷ୍ଟାକଲେ; କିନ୍ତୁ ବୃଥା । ଦେଖୁ ଦେଖୁ ବିଚାରାର କାଚ ପୋଷାକ ବାହାରେ ଥିବା ଦେହର ଅଂଶଟି ମିଳାଇଗଲା ସେହି ମାଛପୂର୍ଣ୍ଣ ପାଣିରେ । ଖାଲି ପଡ଼ିରହିଲା ଧଳା ହାଡ଼ କେତେ ଖଣ୍ଡ ।

ତେବେ ସାଗର ଗର୍ଭରେ ଆମେ ଯେତେ ଅଦ୍ଭୁତ ଦୃଶ୍ୟ ଦେଖିଥିଲୁ ସବୁ ଯେ ଭୟାନକ ତା' ନୁହେଁ । ଗୋଟିଏ ଦୃଶ୍ୟ ମନେପଡୁଛି ଯା'ର ସ୍ମୃତି କେବେହେଁ ମନରୁ ଲିଭିବ ନାହିଁ । ସମୁଦ୍ରତଳ ସମଭୂମିର ଯେଉଁ ଅଂଶ ସହିତ ଆମର ଯଥେଷ୍ଟ ପରିଚୟ ହୋଇଯାଇଥିଲା ଦିନେ ଆମେ ସେହି ବାଟ ଦେଇ ଯାଉଥିଲୁ । ହଠାତ୍ ଆଶ୍ଚର୍ଯ୍ୟ ହୋଇ ଆମେ ଦେଖିଲୁ ଫିକା ହଳଦିଆ ରଙ୍ଗର ପ୍ରଶସ୍ତ ବାଲୁଭୂମି—ଲମ୍ବାଚଉଡ଼ାରେ ପ୍ରାୟ ଅଧ ଏକର ହେବ ତା'ର ବିସ୍ତାର । ଦେଖିଲେ ମନେହେବ କିଏ ଯେମିତି କେଉଁଠୁ ବାଲି ଆଣି ବିଛାଇଦେଇଛି । ଆମେ ଆଶ୍ଚର୍ଯ୍ୟ ହୋଇ ଭାବୁଚୁ କୌଣସି ଅନ୍ତଃସାଗରୀୟ ସ୍ରୋତ କିମ୍ବା କୌଣସି ଭୂକମ୍ପନ ଯୋଗୁ ଏପରି ଘଟିଚି । ଏତିକିବେଳେ ସେ ବାଲିଯାକ ଗୋଟାଏ ବିଶାଳ ଚାନ୍ଦୁଆ ଭଳି ଉପରକୁ ଉଠିଲା ଏବଂ ଅଳ୍ପ ଢେଉ ଖେଳାଇ ଆମ ମୁଣ୍ଡ ଉପର ଦେଇ ଯିବାକୁ ଲାଗିଲା । ସମସ୍ତଟା ଅତିକ୍ରମ କରିବାକୁ ଅନ୍ତତଃ ଦୁଇ ମିନିଟ୍ ଲାଗିଲା । ପ୍ରଫେସର କହିଲେ, 'ଆମେ

ଇଂଲଣ୍ଡରେ ଯେଉଁ ମାଛ ସବୁ ଦେଖୁ ସେଇ ଛୋଟ ଜାତି ମାଛର ଏହା ଗୋଟାଏ ଅତିକାୟ ସଂସ୍କରଣ ।'

ସେମିତି ପୁଣି ଘୂର୍ଣ୍ଣବାୟୁ ବା ପ୍ରଚଣ୍ଡ ଘୂର୍ଣ୍ଣିଝଡ଼ର ସାମୁଦ୍ରିକ ସଂସ୍କରଣ–ଘୂର୍ଣ୍ଣବାରି କହିବା କି ?–ମଧ୍ୟ ଦେଖିଛି । ଆମର ଉପର ପୃଥିବୀରେ ଯେମିତି ଘୂର୍ଣ୍ଣବାୟୁ ସବୁ ଉଡ଼ାଇ ନେଇ ଭାଙ୍ଗି ଚୂରମାର କରି ପ୍ରଳୟକାଣ୍ଡ ସୃଷ୍ଟି କରେ, ସମୁଦ୍ରତଳ ଘୂର୍ଣ୍ଣବାରି ମଧ୍ୟ ଠିକ୍ ସେଇଭଳି । ତେବେ ସବୁ ପ୍ରାକୃତିକ ବ୍ୟାପାର ଭଳି ଏହାର ମଧ୍ୟ ଗୋଟାଏ ଉଦ୍ଦେଶ୍ୟ ଅଛି । ମଝିରେ ମଝିରେ ପାଣି ଭିତରେ ଏତିକି ବିରାଟ ଆଲୋଡ଼ନ ନ ହେଲେ ସ୍ଥିର ପାଣି କ୍ରମଶଃ ପଚିଯାଆନ୍ତା ।

ସ୍କାର୍ପାଙ୍କ କନ୍ୟା ମୋନା ବିଷୟରେ ଆଗରୁ କହିଚ । ଦିନେ ତା' ସହିତ ବୁଲିବାକୁ ବାହାରି ପ୍ରଥମେ ଏପରି ଘୂର୍ଣ୍ଣବାରି ଦାଉରେ ପଡ଼ିଥିଲୁ । ଆଶ୍ରୟସଦନଠାରୁ ଅନ୍ଦାଜ ମାଇଲିଏ ଦୂରରେ ଗୋଟାଏ ଉଚ ବନ୍ଧ ପରି ଥିଲା । ସେ ବନ୍ଧ ଥିଲା ସାମୁଦ୍ରିକ ଅନାବନା ଗଛରେ ପୂର୍ଣ୍ଣ । ମୋନାର ତାହା ପ୍ରିୟ ଉଦ୍ୟାନ ଥିଲା । ସେଦିନ ସେ ମୋତେ ତା'ର ଉଦ୍ୟାନ ଦେଖାଇବାକୁ ନେଇଯାଇଥିଲା । ଆମେ ସେଠି ବସିଥିବା ସମୟରେ ଆସିଲା ଝଡ଼–ପାଣିର ଝଡ଼ । ଦୁହେଁ ଦୁହିଁଙ୍କ ହାତ ଦୃଢ଼ ଭାବରେ ଧରି ଗୋଟାଏ ପଥରଗଦା ପଛରେ ଆଶ୍ରୟ ନେଇ ବହୁ କଷ୍ଟରେ ନିଜକୁ ଭାସିଯିବାରୁ ରକ୍ଷାକଲୁ । ଦେଖିଲୁ ଝଡ଼ ଭଳି ଏହି ସ୍ରୋତରେ ପାଣିଟା ଖୁବ୍ ଗରମ, ଆଉ ଟିକିଏ ଅଧିକ ଗରମ ହୋଇଥିଲେ ହୁଏତ ଆମ ଦେହରେ ଫୋଟକା ହୋଇଥାନ୍ତା । ହୁଏତ ସମୁଦ୍ରତଳେ କେଉଁଠି ଜୀବନ୍ତ ଆଗ୍ନେୟଗିରି ଅଛି ଏବଂ ତାହାରି ଉତ୍ପାତ ଫଳରେ ଏ ଗରମ ସ୍ରୋତ ପ୍ରବାହିତ ହେଉଛି । ସେହି ସ୍ରୋତର ବେଗ ଦ୍ୱାରା ସମଭୂମିର ପଙ୍କ ଆଲୋଡ଼ିତ ହୋଇ ଚାରିଆଡ଼ ଅନ୍ଧକାରମୟ ହୋଇଗଲା । ଆମେ ସମ୍ପୂର୍ଣ୍ଣ ଭାବରେ ଦିଗ୍‌ଭ୍ରାନ୍ତ ହୋଇଗଲୁ । ବାଟ ଚିହ୍ନି ଫେରିଯିବା ଅସମ୍ଭବ ହେଲା । ଏମିତି ତ ସ୍ରୋତ ଭିତରେ ଚାଲିବା ଅସମ୍ଭବ, ସେଥିରେ ପୁଣି ଛାତିରେ ଚାପବୋଧ ଓ ନିଃଶ୍ୱାସ କଷ୍ଟ ଆରମ୍ଭ ହେଲା । ଜାଣିଲୁ ଆମର ଅମ୍ଳଜାନ ପାଣ୍ଠି କ୍ରମେ ଶେଷ ହେବାକୁ ଲାଗିଲାଣି ।

ଏତିକିବେଳେ ଦୂରରୁ ଗୋଟାଏ ଝାଞ୍ଜ ବଜାଇବା ଭଳି ଶବ୍ଦ ଆସୁଥିବାର ଶୁଣିବାକୁ ପାଇଲୁ । ଅଥଚ ସାଧାରଣତଃ କୌଣସି ଶବ୍ଦ ଆମ କାଚ ପୋଷାକ ଭେଦ କରିପାରେ ନାହିଁ । ଯାହାହେଉ ସେଟା ଯେ କି ଶବ୍ଦ ମୁଁ ବୁଝିପାରିଲି ନାହିଁ । କିନ୍ତୁ ଦେଖିଲି ମୋନା ସ୍ପଷ୍ଟ ବୁଝିପାରିଛି । ମୋ ହାତଧରି ସେ ଛିଡ଼ାହେଲା, କାନ ପାରି ସେ ଶବ୍ଦ ସେ ଶୁଣିଲା ଓ ନଇଁପଡ଼ି ସେ ସ୍ରୋତର ଝଡ଼ ଠେଲି ଚାଲିବାକୁ ଲାଗିଲା । ମୃତ୍ୟୁର ହାତ ପାଆନ୍ତା ଦୂରରେ ଆମେ ଦୌଡୁଥାଉ । ପ୍ରତି ମୁହୂର୍ତ୍ତରେ ମୋର ଛାତି ଉପରେ ଭୟାନକ ଚାପବୋଧ ଅଧିକ ଅସହ୍ୟ ହୋଇଉଠୁଥାଏ । ସେ ଯେଉଁ ଆଡ଼କୁ ମୋତେ ନେଉଥାଏ

ମୁଁ ସେଇ ଆଡ଼କୁ ଟଳି ଟଳି ଚାଲୁଥାଏ । ତା'ର ମୁହଁ ଓ ଚାଲିବାର ଢଙ୍ଗ ଦେଖି ବୁଝିଲି ତା'ର ଅମ୍ଳଜାନ ମୋ ଭଳି ଏତେ ଉଣା ପଡ଼ିନାହିଁ । ଏତିକିବେଳେ ମୋର ଚାରିପଟେ ସବୁ କିଛି ଯେମିତି ବୁଲିବାକୁ ଲାଗିଲା । ଦୁଇହାତ ମେଲାଇ ଗରମ ଚଟାଣ ଉପରେ ମୁଁ ଅଚେତ ହୋଇ ପଡ଼ିଗଲି ।

ଚେତା ଫେରି ଆସିବା ପରେ ଦେଖିଲି ଆଶ୍ରୟ ସଦନରେ ନିଜ ଚୌକି ଉପରେ ମୁଁ ଶୋଇଛି । ହଳଦିଆ ପୋଷାକ ପିନ୍ଧା ସେହି ବୃଦ୍ଧ ଭଦ୍ରଲୋକ ମୋ ପାଖରେ ଛିଡ଼ାହୋଇଥାନ୍ତି । ହାତରେ ତାଙ୍କର ଔଷଧ ବୋତଲ । ମାରାକଟ୍ ଓ ସ୍କାନ୍‌ଲନ୍ ଚିନ୍ତିତ ଭାବରେ ମୋ ଉପରେ ନଇଁପଡ଼ିଥାନ୍ତି । ଆଉ ମୋନା ଆଣ୍ଠୁମାଡ଼ି ବସିଥାଏ ମୋ ଗୋଡ଼ପଟେ ବିଛଣାପାଖେ । ତା' ମୁହଁରେ ସ୍ନେହ ଓ ଉଦ୍‌ବେଗ । କ୍ରମେ ଜାଣିବାକୁ ପାଇଲି ଦୁର୍ଯୋଗ ସମୟରେ ଯେଉଁମାନେ ଦୂରରେ ରହିଯାଇଥାନ୍ତି ସେମାନଙ୍କ ପାଇଁ ଆଶ୍ରୟ ସଦନ ପ୍ରବେଶ ଦ୍ୱାରରୁ ଗୋଟାଏ ବିରାଟ ଝାଞ୍ଜ ବଜାଯାଏ ।

.ମୋନା ସେହି ଶବ୍ଦକୁ ଲକ୍ଷ୍ୟ ରଖି ଦୌଡ଼ି ଆସିଥିଲା । ତା'ପରେ ଆଉ କେତେଜଣ ମାରାକଟ୍ ଓ ସ୍କାନ୍‌ଲନ୍‌ଙ୍କୁ ବାଟ ଦେଖାଇ ମୋ ପାଖକୁ ନେଇଯାଇଥିଲେ ଓ ସେମାନେ ମୋତେ ଟେକି ଆଣିଥିଲେ । ଏହାପରେ ମୋ ଜୀବନକାଳ ଭିତରେ ମୁଁ ଯାହା କରେନା କାହିଁକି ତାହା ପାଇଁ ମୁଁ ମୋନା ପାଖରେ ଋଣୀ । ମୋନା ସହିତ ମୋ'ସମ୍ପର୍କ ଯେ କେଡ଼େ ଗଭୀର ତାହା ତା'ର ବାପା ଦିନେ ଆମକୁ ବୁଝାଇଦେଲେ । ଦିନେ ସେ ଆମ ଦି'ଜଣକୁ ତାଙ୍କ ବଖରାକୁ ଡାକିନେଲେ । ସେଠି ସେ ଚିନ୍ତାପ୍ରତିଫଳକ ର଼୍ପେଲି ପର୍ଦା ଟଙ୍ଗାଇଲେ । ମୋନା ଆଉ ମୁଁ ହାତ ଧରାଧରି ହୋଇ ବସି ସବୁ ଦେଖିଲୁ । ଯାହା ଦେଖିଲୁ ତାହା ହୁଏତ ସ୍କାର୍ପାର ପୂର୍ବଜନ୍ମମାନଙ୍କର ସ୍ମୃତି । ପ୍ରଥମେ ଦେଖିଲୁ ନୀଳସମୁଦ୍ର ଭିତରକୁ ପଶିଯାଇଛି ଗୋଟାଏ ପଥୁରିଆ ଅନ୍ତରୀପ । ତା' ଉପରେ ଗୋଟାଏ ପୁରୁଣାକାଳିଆ ଘର ଓ ତା' ଚାରିପଟେ ନାରିକେଳ ବନ । ମନେହେଲା କିଏ ସବୁ ସେହି ନଡ଼ିଆ ବନ ଭିତରେ ତମ୍ବୁ ପକାଇ ରହିଛନ୍ତି । ପତର ଫାଙ୍କରେ ଧଳା ତମ୍ବୁର କିଛି କିଛି ଅଂଶ ଦିଶୁଥିଲା । ମଝିରେ ମଝିରେ ଦିଶୁଥିଲା ଅସ୍ତ୍ରର ଚକମକି । କୌଣସି ପ୍ରହରୀ ତମ୍ବୁ ପାଖରେ ପହରା ଦେଉଥିବା ଭଳି ଜଣାଗଲା ।

ଜଣେ ପ୍ରୌଢ଼ ଲୋକ ସେହି ନଡ଼ିଆ ବନରୁ ବାହାରିଆସିଲେ । ତାଙ୍କ ଦେହରେ ଲୌହ ସାଞ୍ଜୁ ଓ ହାତରେ ଢାଲ । ଅନ୍ୟ ହାତରେ ତଲୁଆର ବା ବର୍ଚ୍ଛା ଗୋଟାଏ କିଛି ଥିଲା । ସେ ଥରେ ଆମ ଆଡ଼କୁ ମୁହଁ ଫେରାଇବା ମାତ୍ରକେ ବୁଝିପାରିଲି ଯେ ସେ ଏଇ ଆଟ୍‌ଲାଣ୍ଟୀୟମାନଙ୍କ ସମଗୋତ୍ରୀ । ଏପରିକି ତାକୁ ସ୍କାର୍ପାର ଯମଜ ଭାଇ ବୋଲି କହି ହୁଅନ୍ତା । କେବଳ ତାହାର ମୁହଁ କର୍କଶ ଓ ହିଂସ୍ର, ପଶୁ ଓ ମଣିଷ ମୁହଁର ଏକ ଭୟଙ୍କର ସମ୍ମିଶ୍ରଣ । ସେ ଯଦି ସ୍କାର୍ପାର କୌଣସି ପୂର୍ବଜନ୍ମର ଚେହେରା ହୁଏ ତାହେଲେ ବୁଦ୍ଧି

ଦିଗରୁ ଯେତେ ନ ହେଉ ପଛକେ ମନୁଷ୍ୟତ୍ୱ ଦିଗରୁ ସେ ସେଇ ପୁରାତନ ସ୍ପାର୍ଟାଠାରୁ ବର୍ତ୍ତମାନ ଅନେକ ଉଚ୍ଚରେ ସନ୍ଦେହ ନାହିଁ ।

ସାଣ୍ଡୁପିନ୍ଧା ସେଇ ଲୋକଟି ସେଇ ଘର ପାଖକୁ ଆସିବାରୁ ଗୋଟିଏ ଅଳ୍ପବୟସୀ ଝିଅ ଘରୁ ବାହାରିଆସିଲା । ଭାବରୁ ମନେହେଲା ସେ ସେହି ଲୋକଟିର ଝିଅ । ଲୋକଟି କିନ୍ତୁ ଅକାରଣ ରାଗିଯାଇ ଝିଅକୁ ମାରିବାକୁ ଲାଗିଲା । ଝିଅଟି ଭୟରେ ପଛେଇ ଯାଆନ୍ତେ ସୂର୍ଯ୍ୟାଲୋକ ତା' ସୁନ୍ଦର ମୁହଁରେ ପଡ଼ିଲା । ଦେଖିଲି ସେ ଆଉ କେହି ନୁହେଁ ମୋନା ।

ର୍‌ପେଲି ପର୍ଦା ଅସ୍ପଷ୍ଟ ହୋଇଗଲା ଏବଂ ସାଙ୍ଗେ ସାଙ୍ଗେ ଆଉ ଗୋଟିଏ ଛବି ପ୍ରତିଫଳିତ ହେଲା । ପାହାଡ଼ଘେରା ଏକ ସମୁଦ୍ର । କୂଳରୁ ଅଳ୍ପଦୂରରେ ଗୋଟିଏ ଅଦ୍ଭୁତ ଗଢ଼ଣର ଡଙ୍ଗା । ତା'ର ମଙ୍ଗଟି ଖୁବ୍ ଉଚ୍ଚ ଓ କ୍ରମଶଃ ସରୁ । ସେତେବେଳକୁ ରାତି ହୋଇଥାଏ । ଜ୍ୟୋତ୍ସ୍ନାରେ ପାଣି ଉପର ଝଟକି ଉଠୁଥାଏ ।

ଆମର ପରିଚିତ ତାରାଗୁଡ଼ିକ ସେ ଆକାଶରେ ମଧ୍ୟ ଜଳୁଥିଲେ । ଧୀରେ ଧୀରେ, ଗୋପନରେ ଆସିବା ଭଳି, ନୌକାଟି କୂଳରେ ଲାଗିଲା । ଦୁଇଜଣ ଲୋକ ନୌକା ଚଳାଉଥିଲେ । ଆଉ ଜଣେ କାଳିଆ ଲୁଗାରେ ଦେହଯାକ ଢାଙ୍କି ହୋଇ ମଙ୍ଗ ଉପରେ ବସିଥିଲା । ସେ ବର୍ତ୍ତମାନ ଛିଡ଼ାହୋଇ ଚାରିଆଡ଼କୁ ଅନାଇ ଦେଖିଲା । ସେହି ଉଜ୍ଜ୍ୱଳ ଚନ୍ଦ୍ରାଲୋକରେ ମୁଁ ତା'ର ମୁହଁ ସ୍ପଷ୍ଟ ଦେଖିବାକୁ ପାଇଲି । ସେ ଆଉ କେହି ନୁହେଁ ମୁଁ ।

ହଁ ମୁଁ ନିଜେ, ଏବକାଳରେ ନିଉୟର୍କ ଓ ଅକ୍‌ସଫୋର୍ଡ଼ର ସାଇରାସ ହେଡ୍‌ଲେ । ଆଧୁନିକ ଜଗତରେ ମଣିଷ, ଏଇ ମୁଁ ଦିନେ ପୁରାକାଳର ଏଇ ବିରାଟ ଆଟଲାଣ୍ଟୀୟ ସଭ୍ୟତାର ଅଂଶ ସ୍ୱରୂପ ଥିଲି । ମୁଁ ସେତେବେଳେ ବୁଝିପାରିଲି କାହିଁକି ସାଗର ତଳର ସେହି ରାଜ୍ୟର ସାଙ୍କେତିକ ଚିହ୍ନ ଓ ଲେଖାଗୁଡ଼ିକ ମୁଁ ଜାଣିନଥିଲେ ବି ଗୋଟାଏ ଅନାମୀ ପରିଚୟର ଆଭାସ ଦେଉଥିଲା । ମୋନା ସହିତ ପ୍ରଥମ ଦେଖାରେ ଏତେ ଆନନ୍ଦ କାହିଁକି ପାଇଥିଲି ତା' ମଧ୍ୟ ବୁଝିପାରିଲି । ଏ ସବୁର କାରଣ ଲୁଚି ରହିଥିଲା ମୋ ମନ ଗହନର ସୁପ୍ତ ଅନ୍ତଃସ୍ଥଳରେ ଯେଉଁଠି ସଞ୍ଚିତ ଥିଲା ବାର ହଜାର ବର୍ଷର ସ୍ମୃତି ।

ଟିକିଏ ପରେ ବନ ଭିତରୁ ବାହାରି ଆସିଲା ଗୋଟିଏ ଝିଅ । ତାକୁ ମୁଁ–ପୁରାକାଳର ସେଇ ମୁଁ–ପ୍ରାୟ ଟେକିନେଇ ନୌକାଉପରକୁ ଆସିଲି । ଏତିକିବେଳେ ଗୋଟାଏ ଗୋଳମାଳ ହେଲା । ମୁଁ ପାଗଳ ଭଳି ପ୍ରାଣପଣ ଠାରିଲି ନୌକା ଛାଡ଼ିଦେବାକୁ, କିନ୍ତୁ ଇତିମଧ୍ୟରେ ଦଳ ଦଳ ହୋଇ ଲୋକ ବନ ଭିତରୁ ବାହାରିଆସିଥାନ୍ତି । ନୌକା ଉପରେ ଏକାବେଳକେ ଅନେକ ଗୁଡ଼ିଏ ହାତ ପଡ଼ିଲା । ମୁଁ ଯଥାସାଧ୍ୟ ଚେଷ୍ଟାକଲି ସେମାନଙ୍କୁ ମାରି ଘଉଡ଼ାଇଦେବାକୁ । ସେମାନଙ୍କ ଭିତରୁ ଗୋଟିଏ କୁଠାର ଶୂନ୍ୟରେ ଝଲସି ଆସି ମୋ ମୁଣ୍ଡ ଉପରେ ପଡ଼ିଲା । ମୁଁ ମରି ପଡ଼ିଗଲି ସେହି ଝିଅଟି ଉପରେ ।

ସେ ପାଗଳୀ ଭଳି ଚିତ୍କାର କରିବାକୁ ଲାଗିଲା । ତା' ବାପା ଦୌଡ଼ିଆସି ତା'ର ଲମ୍ବା କଳା କେଶକୁ ଧରି ମୋ ମୃତଦେହ ତଳୁ ଟାଣି ବାହାରକଲା । ସେଇ ସ୍କାର୍ପା ଓ ସେଇ ମୋନା ।

ପୁଣି ଆଉ ଗୋଟିଏ ଛବି ପ୍ରତିଫଳିତ ହେଲା । ଜାତିର ଚରମ ବିପଦ ବେଳେ ଆଶ୍ରୟ ପାଇବା ଉଦ୍ଦେଶ୍ୟରେ ସେଇ ମହାଜ୍ଞାନୀ ଆଟଲାଣ୍ଟୀୟ ଯେଉଁ ବିଶାଳ ଶରଣାଳୟ ତିଆରି କରାଇଥିଲେ ତା' ଭିତରର ଦୃଶ୍ୟ । ତା' ଭିତରେ ଯେଉଁମାନେ ଆଶ୍ରୟ ନେଇଥିଲେ ତାଙ୍କ ମୁହଁରେ ଗଭୀର ଆତଙ୍କ । ସେଠି ମୋନାକୁ ଆଉଥରେ ଦେଖିଲି । ତା' ବାପାଙ୍କୁ ବି ଦେଖିଲି । ସେ ସେତେବେଳେ ପୂର୍ବପରି ଦିଶୁନଥାନ୍ତି । ତାଙ୍କର ଭାବ, ଆଚରଣ ଅନେକ ଉନ୍ନତ ସ୍ତରର । ଝଡ଼ରେ ଜାହାଜ ଦୋହଲିଲା ଭଳି ସେହି ବିଶାଳ ଘରର ଭିତରଟା ଯାକ ଦୋହଲିବାକୁ ଲାଗିଲା । ଶରଣାର୍ଥୀମାନଙ୍କ ଭିତରୁ କେହି ସ୍ତମ୍ଭକୁ କୁଣ୍ଢାଇ ରହିଲେ, କେହିବା ତଳେ ପଡ଼ିଗଲେ । ତା'ପରେ ଘରଟି ଦବିବାକୁ ଲାଗିଲା । କ୍ରମଶଃ ତଳକୁ ଯାଇ ଯାଇ ଶେଷରେ ସମୁଦ୍ରତଳେ ପହଞ୍ଚିଲା । ଛବି ଶେଷ ହୋଇଗଲା । ସ୍କାର୍ପା ମୃଦୁହସି ଆମକୁ ଏ କଥା ଜଣାଇଲେ ।

ଏହାର କିଛିଦିନ ପରେ ସେଠାର ସମାଜରେ ଏକ ଘୋର ବିପଦ ଉପସ୍ଥିତ ହେଲା । କେବଳ ଡ: ମାରାକଟ୍‌ଙ୍କ ଅସାଧାରଣ ବ୍ୟକ୍ତିତ୍ୱ ଯୋଗୁ ତାହା ଦୂର ହୋଇପାରିଥିଲା । ସେ ହେଉଛି ''ପ୍ରଭୁ ଘୋରଦର୍ଶନ''ଙ୍କ କଥା । ସେଇ କଥା କହି ଏ କାହାଣୀ ଶେଷକରିବି ।

## ଦଶ

ପୂର୍ବେ କହିଛି ଶରଣାଳୟଟି ଯେଉଁଠି ସମୁଦ୍ରତଳେ ଆସି ପଡ଼ିଥିଲା ମୂଳ ସହରଟିର ଧ୍ୱଂସାବଶେଷ ସେଠାରୁ ବେଶି ଦୂରରେ ନୁହେଁ । ପରେ ଆହୁରି ଅନେକଥର ସେଠାକୁ ଯାଇଛି । ପଥର ଖୋଳି ବଡ଼ ବଡ଼ ବଖରା ସେଠି ତିଆରି ହୋଇଛି । ମହାସାଗରର ଅତଳସ୍ପର୍ଶୀ ଗଭୀରତା ମଧ୍ୟରେ ପ୍ରକାଣ୍ଡ ପ୍ରକାଣ୍ଡ ସ୍ତମ୍ଭଗୁଡ଼ିକ ଅନୁପ୍ରଭା ଆଲୋକରେ ନିଥର ନିସ୍ତବ୍ଧ ଭାବରେ ଛିଡ଼ା ହୋଇ ରହିଚନ୍ତି । କେବଳ ସାମୁଦ୍ରିକ ଅନାବନା ଲତାପତ୍ରଗୁଡ଼ିକ ଅନ୍ତଃସାଗରୀୟ ସ୍ରୋତରେ ଆସ୍ତେ ଆସ୍ତେ ଆନ୍ଦୋଳିତ ହେଉଥାନ୍ତି । ସେହି ସବୁ ବିରାଟ ବିରାଟ ଦୁଆର ବାଟେ ହୁଏତ କୌଣସି କୌଣସି ବୃହତ୍‌ଆକାର ମାଛ ଯିବାଆସିବା କରୁଥାନ୍ତି । ଆମର ବନ୍ଧୁ ମାଣ୍ଡାଙ୍କ ସହିତ ଆମେ ଘଣ୍ଟା ପରେ ଘଣ୍ଟା ପୁରାକାଳର ସେହି ଅଦ୍ଭୁତ ସ୍ଥାପତ୍ୟ ବୁଲି ବୁଲି ଦେଖୁଥାଉଁ । ଦେଖି ଦେଖି ମନେହୋଇଥିଲା, ନିଛକ ବସ୍ତୁବାଦ ଦିଗରୁ, ଅର୍ଥାତ୍ ଭଲ ଖାଇବି, ଭଲ ପିନ୍ଧିବି, ଭଲ ବିଛଣାରେ ଶୋଇବି, ଭଲ ଘରେ ରହିବି, ଯେତେ ପ୍ରକାର ଆରାମ ଅଛି ସବୁ ଭୋଗ କରିବି, କେବଳ ଏହି ଦିଗରୁ ଦେଖିଲେ ସେମାନଙ୍କ ସଭ୍ୟତା ଆମ ସଭ୍ୟତାଠାରୁ

ଅନେକ ଉନ୍ନତ ଥିଲା । ସେମାନେ ମଣିଷର ଦୈହିକ ସୁଖ ଓ ଆରାମ ପାଇଁ ଯେତେ ରକମ ବ୍ୟବସ୍ଥା କରିପାରିଥିଲେ ଆମେ ହୁଏତ ଏବେ ବି ତାହା କରି ପାରିନାହୁଁ ।

କିନ୍ତୁ କେବଳ ଦେହର ଆରାମ ତ ଶେଷ କଥା ନୁହେଁ । ଅନ୍ୟ ଦିଗରୁ– ଯାହାକୁ କହନ୍ତି ଆତ୍ମିକ ଦିଗରୁ–ସେଥିରେ ଆମେ ଯେ ସେମାନଙ୍କଠାରୁ ଅନେକ ଉନ୍ନତ ତାହାର ପ୍ରମାଣ ଆମେ କିଛି ଦିନ ପରେ ପାଇଲୁ । ସେତେବେଳେ ବୁଝିପାରିଲି ଏଡ଼େ ବଡ଼ ସଭ୍ୟତାର ପତନ କାହିଁକି ହେଲା । କେବଳ ମୁଁ ଏକା ନୁହେଁ, ସମସ୍ତେ ସୁଖୀ ହୁଅନ୍ତୁ, ସମସ୍ତଙ୍କର ମଙ୍ଗଳ ହେଉ–ମଣିଷର ଏଇ ଭାବ ତା'ର ବୁଦ୍ଧି ସହିତ ତାଳେ ତାଳେ ନ ଗଲେ ସଭ୍ୟତାର ସବୁଠାରୁ ବଡ଼ ବିପଦ ଦେଖାଦିଏ । ଏ ବିଷୟରେ ସାବଧାନ ନହେଲେ ଦିନେ ଆମ ସଭ୍ୟତାର ମଧ୍ୟ ପତନ ହେବ ।

ସେଇ ପ୍ରାଚୀନ ସହରର ଏକ ଦିଗରେ ଗୋଟିଏ ପ୍ରକାଣ୍ଡ କୋଠାଘର ଅଛି । ହୁଏତ୍ ଦିନେ ତାହା କୌଣସି ପାହାଡ଼ ଚୂଡ଼ା ଉପରେ ଅବସ୍ଥିତ ଥିଲା; କାରଣ ଆମେ ଦେଖିଲୁ ଅନ୍ୟାନ୍ୟ ଘରମାନଙ୍କଠାରୁ ତାହା ଅନେକ ଉଚ୍ଚରେ ଅବସ୍ଥିତ । କଳା ମାର୍ବଲ ପଥରର ଚଉଡ଼ା ଶିଡ଼ି ଉପରକୁ ଉଠିଯାଇଛି । ସେହି କୋଠାଘରର ଅଧିକାଂଶ କଳା ମାର୍ବଲରେ ତିଆରି; କିନ୍ତୁ ବର୍ତ୍ତମାନ ତା'ର ସମଗ୍ର ଦେହଟିଯାକ ହଳଦିଆରଙ୍ଗର ଶିଉଳିରେ ପୂର୍ଣ୍ଣ । ସିଂହଦ୍ୱାରଟି ବି କଳା ପଥରରେ ତିଆରି । ତା' ଉପରେ ମେଡୁସା (Medusa)ର ମୁଣ୍ଡ ଭଳି ଗୋଟାଏ ବିକଟାଳ ମୁଣ୍ଡ ଓ ତା' ଚାରିପଟେ ଉତ୍ଫଣ ସାପ–ସବୁ ପଥର ଖୋଦେଇ । କାନ୍ଥରେ ଏଠି ସେଠି ସେଇ ପ୍ରତୀକ ଅଙ୍କାହୋଇଛି । ଦିନେ ଆମେ ସେଇ ଅଟ୍ଟାଳିକା ଭିତରେ କ'ଣ ଅଛି ଦେଖିବାକୁ ଇଚ୍ଛା ପ୍ରକାଶ କରନ୍ତେ ମାଣ୍ଡା ବ୍ୟସ୍ତ ହୋଇ ଆମକୁ ଫେରିଯିବାର ସଙ୍କେତ ଦେଲେ । ସେଥିଯୋଗୁଁ ଆମର କୌତୂହଳ ପ୍ରବଳ ହେବାରୁ ମୁଁ ଓ ସ୍କାନ୍‌ଲନ୍ ଦିନେ ସ୍ଥିର କଲୁ ଯେ କାହାରିକୁ ନ ଜଣାଇ ଆମେ ସେ ଅଟ୍ଟାଳିକା ଭିତରକୁ ଯାଇ ଦେଖିବୁ – ସେଠି ଏମିତି କ'ଣ ଅଛି ଯାହା ପାଇଁ ମାଣ୍ଡା ଏପରି ବ୍ୟସ୍ତ ହୁଅନ୍ତି । ଏତିକିବେଳେ ଡଃ ମାରାକଟ୍ ଘର ଭିତରେ ପ୍ରବେଶକଲେ । ମୁଁ ପଚାରିଲି– ଆପଣଙ୍କର ଏଥିରେ କିଛି ଆପତ୍ତି ଅଛି ସାର୍ ? ଆପଣ ନିଜେ ହୁଏତ ଆମ ସହିତ ଯାଇ ଏହି କୃଷ୍ଣମର୍ମର ପ୍ରାସାଦର ରହସ୍ୟ ଭେଦ କରିବାକୁ ଇଚ୍ଛୁକ ଅଛନ୍ତି ।

ସେ କହିଲେ, 'ସେଟା କୃଷ୍ଣ ମାୟାର ପ୍ରାସାଦ ମଧ୍ୟ ହୋଇପାରେ । ତୁମେ ପ୍ରଭୁ ଘୋରଦର୍ଶନ କଥା ଶୁଣିଛ କି ?'

ଶୁଣିନାହିଁ କହିବାରୁ ସେ କହିଲେ, 'ଆଟଲାଣ୍ଟିସ୍ ବିଷୟରେ ଆମର ଯାହା କିଛି ଜ୍ଞାନ ଅଛି ତାହା ମିସର ଜରିଆରେ । ମିସରର ଦେବତା ସାଇସ୍‌ଙ୍କ ମନ୍ଦିରର ପୁରୋହିତମାନେ ଯତ୍‌ସାମାନ୍ୟ ଯାହା ଜାଣିଥିଲେ ତା' ସହିତ ଲୋକଙ୍କ କଳ୍ପନା ମିଶି ଏକ କିମ୍ବଦନ୍ତୀ ସୃଷ୍ଟି ହୋଇଛି ।'

ସ୍କାନ୍‌ଲନ୍ ପଚାରିଲା, 'ତାହେଲେ କି ଜ୍ଞାନଗର୍ଭ ବାଣୀ ସେ ପୁରୋହିତମାନେ ଦେଇଥିଲେ ?'

'ସେମାନେ ଅନେକ କଥା କହିଥିଲେ – ତା' ଭିତରେ ପ୍ରଭୁ ଘୋରଦର୍ଶନଙ୍କ କଥା ମଧ୍ୟ ଅଛି । ମୋର ବରାବର ଧାରଣା ସେହି ପ୍ରଭୁ ଘୋରଦର୍ଶନ ବୋଧହୁଏ ଏହି କୃଷ୍ଣମର୍ମର ପ୍ରାସାଦର ମାଲିକ ।'

ସ୍କାନ୍‌ଲନ୍ ପଚାରିଲା, 'ସେ କେଉଁ ଢଙ୍ଗଢ଼ାଙ୍ଗର ଚିଜ ?'

'ତାଙ୍କ ସମ୍ବନ୍ଧରେ ଯାହା ଜଣାଅଛି ସେଥିରୁ ଏତିକି ଧାରଣା ଜନ୍ମେ ଯେ ତାଙ୍କର କ୍ଷମତା ଯେତେ ଦୌରାତ୍ମ୍ୟ ବି ସେତେ । ଏ ଦୁଇ ଏତେ ବେଶି ଯେ ମଣିଷ ପକ୍ଷରେ ତାହା ସମ୍ଭବ ନୁହେଁ । ନିଜେ ତ ସେ ଚୂଡ଼ାନ୍ତ ମନ୍ଦ ଥିଲେ, ତା' ସହିତ ଲୋକମାନଙ୍କୁ ମନ୍ଦ କରି ଗଢ଼ିବା ଯେମିତି ତାଙ୍କ ଜୀବନର ବ୍ରତ ଥିଲା । ଶେଷରେ ଭଗବାନ୍ ବୋଧହୁଏ ଇଚ୍ଛା କଲେ ସେସବୁ ନିର୍ମୂଳ କରି ପୁଣି ଥରେ ମୂଳରୁ ଆରମ୍ଭ କରିବାକୁ । ଆଉ ସେଇଥି ପାଇଁ ସମଗ୍ର ଦେଶଟା ଧ୍ୱଂସହୋଇଗଲା । ଏଇ ହେଲା ମୋଟାମୋଟି ପ୍ରଭୁ ଘୋରଦର୍ଶନ ବିଷୟରେ କିମ୍ବଦନ୍ତୀ । ଆଟଲାଣ୍ଟିସ୍‌ର ସେହି ମହାପୁରୁଷ ଯେଉଁମାନଙ୍କୁ ତାହାର ମନ୍ଦ ପ୍ରଭାବରୁ ବଞ୍ଚାଇପାରିଥିଲେ ସେମାନେ ଅବଶ୍ୟ ଏହି ଶରଣାଳୟରେ ଆଶ୍ରୟ ପାଇ ରକ୍ଷାପାଇଲେ । ସେମାନଙ୍କ ବଂଶଧରମାନେ ତେଣୁ ପ୍ରଭୁ ଘୋରଦର୍ଶନଙ୍କ ଆସ୍ଥାନକୁ ଭୟ କରିବାର ତ କଥା ।'

ମୁଁ କହିଲି, 'ଆଉ ଠିକ୍ ସେଇ କାରଣରୁ ସେଠି ପ୍ରବେଶ କରିବା ପାଇଁ ମୁଁ ଅସ୍ଥିର ।'

ବିଲ୍ କହିଲା, 'ମୋର ବି ସେଇ କଥା ।'

ପ୍ରଫେସର କହିଲେ, 'ତାହେଲେ ମୁଁ ବି କହିବି ଘରଟି ଦେଖିବାକୁ ମୋର ବି ଇଚ୍ଛା ଅଛି । ଆମର ଏଠା ବନ୍ଧୁମାନେ ଆମକୁ ସେଠାକୁ ନେଇଯିବା ପାଇଁ ଅନିଚ୍ଛୁକ ଥିବା ସତ୍ତ୍ୱେ ଆମେ ନିଜେ ଯଦି ଯାଉଁ ସେଥିରେ ସେମାନଙ୍କର କୌଣସି ଅନିଷ୍ଟ ହେବ ବୋଲି ମୁଁ ଭାବୁନାହିଁ । ସୁଯୋଗ ପାଇବା ମାତ୍ରେ ଆମେ ଯିବୁ ।'

ସୁଯୋଗ ଆସିବାକୁ କିଛିଦିନ ଲାଗିଲା । ଦିନେ କୌଣସି ଏକ ପର୍ବ ଉପଲକ୍ଷ୍ୟରେ ସେଠାକାର ସମସ୍ତେ ବ୍ୟସ୍ତ ଥିଲେ । ପ୍ରବେଶଦ୍ୱାର ନିକଟସ୍ଥ ବିରାଟ ପମ୍ପଗୁଡ଼ିକ ଦୁଇଜଣ ମାତ୍ର ଲୋକଙ୍କ ହେପାଜତରେ ଥିଲା । ସେମାନଙ୍କୁ ବୁଝାଇ କହିଲୁ ଆମେ ବାହାରେ ଟିକିଏ ବୁଲି ଆସିବାକୁ ଇଚ୍ଛାକରୁ । ପାଣି ଠେଲି ଯାଇ ଘଣ୍ଟାକ ଭିତରେ ଆମେ ସେଇ ରହସ୍ୟମୟ ପ୍ରାସାଦ ନିକଟରେ ପହଞ୍ଚିଲୁ । ଏଥର ଭିତରକୁ ଯିବାରେ ବାଧା ଦେବାକୁ କେହି ନାହିଁ । ଆମେ ନିର୍ବିଘ୍ନରେ କଳା ମାର୍ବଲ ଶିଡ଼ିରେ ଉଠି ସେଇ ବିରାଟ ସିଂହଦ୍ୱାର ବାଟେ ଭିତରକୁ ଗଲୁ । ଦେଖିଲୁ ସେହି ପ୍ରାଚୀନ ସହରଟିର ଅନ୍ୟାନ୍ୟ ଘରଗୁଡ଼ିକ

ଅପେକ୍ଷା ଏହି କୋଠାଟି ଅନେକ ଭଲ ଅବସ୍ଥାରେ ଅଛି । ତା'ର ପଥର ପାଚେରି ଓ ବଖରାଗୁଡ଼ିକର କୌଣସି କ୍ଷତି ହୋଇ ନାହିଁ କହିଲେ ଚଳେ । କେବଳ ଆସବାବ ପତ୍ର ଅନେକ କାଳ ଆଗରୁ ନଷ୍ଟ ହୋଇଯାଇଥିଲା । ସେଗୁଡ଼ିକ ବଦଳରେ ପ୍ରକୃତି ତା'ର ନିଜ ହାତତିଆରି ଜିନିଷ ଦ୍ୱାରା ଘର ସଜାଇଥିଲା, ଯଦିଓ ସେ ସବୁ ଦେଖିବାକୁ ବଡ଼ ଭୟଙ୍କର । ସହଜରେ ତ ସ୍ଥାନଟି ଅନ୍ଧକାରମୟ, ତା'ଉପରେ ସେଠି ବୁଲୁଥାନ୍ତି ଅନେକ ଗୋଡ଼ଥିବା ବିକଟ ଦର୍ଶନ ଜୀବମାନ ଓ କିମ୍ଭୂତ ଚେହେରାର ମାଛ । ବିଶେଷ କରି ମୋର ମନେପଡ଼େ ପ୍ରକାଣ୍ଡ ପ୍ରକାଣ୍ଡ ନେଳିଆ-ଲାଲ ରଙ୍ଗର ଗେଣ୍ଡା, କିନ୍ତୁ ତା'ର ଖୋଳ ନାହିଁ । ସେ ସବୁ ସର୍ବତ୍ର ବୁଲୁଥାନ୍ତି । ତାଛଡ଼ା ଏକପ୍ରକାର ବଡ଼ ବଡ଼ କାଳିଆ ଚେପ୍‌ଟା ମାଛ ଯାହା ଚଟାଣ ଉପରେ ମସିଣା ବିଛା ହେବା ଭଳି ପଡ଼ିଥାନ୍ତି । ସେମାନଙ୍କ ଶୁଣ୍ଢ ଆଗରେ ଅଗ୍ନିଶିଖା ଯେମିତି କମ୍ପୁଥାଏ । ସମସ୍ତ ଘରଟା ଏମିତି ସବୁ ଉଦ୍‌ଭଟ ଜୀବରେ ପୂର୍ଣ୍ଣ ।

କିନ୍ତୁ କାରୁକାର୍ଯ୍ୟ କି ଚମତ୍କାର – ବଖରାଗୁଡ଼ିକର ବାହାରେ, ଭିତରେ, ବାରନ୍ଦାରେ ସବୁଜାଗାରେ । ଘରର ଠିକ୍ ମଝିରେ ଗୋଟିଏ ପ୍ରକାଣ୍ଡ ଆଡ଼ମ୍ବରପୂର୍ଣ୍ଣ ସୁନ୍ଦର କକ୍ଷ । ଆମ ଟର୍ଚ୍ଚ ଆଲୁଅ ସାହାଯ୍ୟରେ କାନ୍ଥର କାରୁକାର୍ଯ୍ୟ ଦେଖିଲୁ, କେତେ ରକମର ମୂର୍ତ୍ତି ଓ ନକ୍‌ସା । ଏ କଥା ସ୍ୱୀକାର କରିବାକୁ ପଡ଼ିବ ଯେ ଶିଳ୍ପକଳା ଦିଗରୁ ସେ ସବୁ ଅପୂର୍ବ ସୁନ୍ଦର । ତାଠୁଁ ସୁନ୍ଦର ଆଉ କିଛି ହୁଏତ ମଣିଷ କଳ୍ପନା କରିପାରିବନାହିଁ । କିନ୍ତୁ ସେ ସବୁ ଭିତରେ ଏମିତି ଗୋଟାଏ ନିଷ୍ଠୁର ଭାବ ଥାଏ ଯାହା ମନୁଷ୍ୟର ଅଯୋଗ୍ୟ । ସଇତାନର ପୂଜା ମନ୍ଦିର ଯଦି କେଉଁଠି ଥାଏ ତେବେ ତାହା ଏଇ । କିଛିଦୂର ଆଗେଇ ଯିବାରୁ ଦେଖିଲୁ ସେ କକ୍ଷର ଗୋଟିଏ ପଟରେ ଅଛି ଧାତୁନିର୍ମିତ ଗୋଟିଏ ଚାନ୍ଦୁଆ–ବୋଧହୁଏ ସୁନାର । ତା' ତଳେ ଲାଲ ମାର୍ବଲ ତିଆରି ଗୋଟିଏ ସିଂହାସନ ଉପରେ ବସିଛନ୍ତି ଏକ ଭୟଙ୍କର ଦେବତା, ମୂର୍ତ୍ତିମାନ ଅମଙ୍ଗଳଭଳି ।

ଶରଣାଳୟର ଗୋଟିଏ ଜାଗାରେ ଯେଉଁ ବେଓ୍ୱାଲଙ୍କ ମୂର୍ତ୍ତି ଦେଖିଥିଲି ଏ ମଧ୍ୟ ସେହି ଭଳି; କିନ୍ତୁ ଆହୁରି ଅନେକଗୁଣ ବେଶି ଉଭଟ ଓ ଭୟାନକ । କିନ୍ତୁ ତାହାର ସେଇ ଭୀଷଣ ମୁହଁର ମନ୍ଦ ଭାବ ସହିତ ଏମିତି ଗୋଟାଏ ଶକ୍ତିର ଭାବ ଥିଲା ଯାହା ଦେଖିଲେ ଆଖି ଫେରାଇ ହୁଏ ନାହିଁ । ଆମ ଆଲୁଅ ପଡ଼ିଥିଲା ସେଇ ମୁହଁ ଉପରେ । ଆମେ ତନ୍ମୟ ହୋଇ ଛିଡ଼ାହୋଇଥିଲୁ । ଏତିକିବେଳେ ଆମ ପଛପଟରୁ କିଏ ହା ହା...କରି ବିଦପର ହସ ହସିଲା ।

ଆମ କାଚ ପୋଷାକ ଭିତରୁ କଥା କହିଲେ ତା' ଯେମିତି ବାହାରକୁ ଯିବ ନାହିଁ ସେମିତି ବାହାରୁ କେହି କଥା କହିଲେ ସେ ଶବ୍ଦ ତା ଭିତରକୁ ଆସି ପାରିବ ନାହିଁ । ତାଛଡ଼ା ପାଣି ଭିତରେ କିଏ ହସି ପାରିବ ବା କେମିତି ? ଆଶ୍ଚର୍ଯ୍ୟ ହୋଇ ପଛକୁ

ଅନାଇ ଆମେ ଯାହା ଦେଖିଲୁ ସେଥିରେ ଆମେ ସ୍ତମ୍ଭିତ ହୋଇଗଲୁ । ଖମ୍ଭକୁ ଡେରି ଛିଡ଼ାହୋଇଚି ଗୋଟିଏ ମଣିଷ–ହଁ ମଣିଷ ହିଁ କୁହାଯିବ ତାକୁ । କିନ୍ତୁ ମଣିଷ ଯେ ଏମିତି ହୋଇପାରେ ତା କେବେହେଁ ମୁଁ ଭାବିନାହିଁ । ମଣିଷ ଏଇ ଗଭୀର ସମୁଦ୍ର ତଳେ କୌଣସି ଯନ୍ତ୍ରର ସାହାଯ୍ୟ ନ ନେଇ ସ୍ୱଚ୍ଛନ୍ଦଭାବରେ ନିଃଶ୍ୱାସ ନେଉଚି, ଖାଲି ସେତିକି ନୁହେଁ କଥା ବି କହୁଚି, ତା' କଥା ଆମେ କାନରେ ସ୍ପଷ୍ଟ ଶୁଣିପାରୁଚୁ, ଏସବୁ ଦେଖି ବୁଝିଲି ସେ ଆମଠାରୁ ଏକଦମ୍ ଅଲଗା । ଦେଖିବାକୁ ସେ ଅସାଧାରଣ ସୁପୁରୁଷ । ଉଚ୍ଚତାରେ ସାତ ଫୁଟରୁ ଊଣା ହେବ ନାହିଁ, ଅତି ସୁଠାମ ଗଢ଼ଣ । ପିନ୍ଧିଚି ସର୍କସର ଖେଳୁଆଡ଼ ଭଳି ଚିପା ପୋଷାକ, ମନେହେଲା ସେଟା କୌଣସି ଚକଚକିଆ କଳା ଚମଡ଼ାରେ ତିଆରି । ବ୍ରଞ୍ଜ୍ ତିଆରି ମୂର୍ତ୍ତି ଭଳି ମୁହଁ । ମଣିଷ ମୁହଁରେ କେତେ ପରିମାଣରେ ଶକ୍ତି ଓ ତା' ସହିତ ମନ୍ଦଭାବ ଫୁଟାଇହେବ ତାହା ପରୀକ୍ଷା କରି ଦେଖିବା ପାଇଁ ଯେମିତି କୌଣସି ମହାଶିଳ୍ପୀ ସେ ମୂର୍ତ୍ତି ଗଢ଼ିଛି । ଈଗଲ ଚଞ୍ଚୁ ଭଳି ଧାରୁଆ ନାକ, ଜବରଦସ୍ତ ଦୁଇଟି କଳା ଭଲତା, ଗଭୀର କଳା ଆଖି ଦି'ଟା ମନେ ହୁଏ ଯେମିତି ଭସ୍ମାଚ୍ଛାଦିତ ବହ୍ନି ମଝିରେ ମଝିରେ ଜଳିଉଠୁଥାଏ । ସେ ଆଖିର ଚାହାଣିରେ ଫୁଟିଉଠୁଥାଏ ମଣିଷର ଅମଙ୍ଗଳ କରିବାର ଅହେତୁକ ଇଚ୍ଛା ଓ ନିଷ୍ଠୁରତାର ଆନନ୍ଦ । ପତଳା କିନ୍ତୁ ନିୟତି ପରି ନିର୍ମମ ଦୁଇଟି ଓଠ, ଯେମିତି ମୁହଁର ମାଂସ ଉପରେ ଗୋଟାଏ ଗଭୀର କଟାଦାଗ । ସେ ଆଖି, ସେ ମୁହଁ, ସେ ଓଠକୁ ଚାହିଁଲେ ମନରେ ତ୍ରାସ ସଞ୍ଚାର ହୁଏ ।

ଆମେ ସମସ୍ତେ ପୃଥିବୀ ଉପରେ ଥିବାଭଳି ସହଜରେ ଓ ପରିଷ୍କାର ଗଳାରେ ଚମତ୍କାର ଇଂରାଜୀରେ ସେ କହିଲା, 'ମହାଶୟଗଣ, ଇତିମଧ୍ୟରେ ତୁମେମାନେ ଅନେକ ନୂତନ ଜିନିଷ ଦେଖିସାରିଚ, ନୂତନ କଥା ଜାଣିଚ । ପରେ ହୁଏତ ଆହୁରି ଜାଣିବ । ଅବଶ୍ୟ ତୁମର ସବୁ ଦେଖିବା ସବୁ ଜାଣିବା ହଠାତ୍ ବନ୍ଦକରିଦେବାର ଅପ୍ରୀତିକର କାର୍ଯ୍ୟଟି ହୁଏତ ମୋତେ କରିବାକୁ ପଡ଼ିପାରେ । ଆପାତତଃ ଆମ ମଧ୍ୟରେ ଆଳାପ ଏକତରଫା ହେଉଚି । ତେବେ ତୁମ ମନର ପ୍ରତ୍ୟେକଟି କଥା ମୁଁ ଯଦି ଯଥାଯଥ ରୂପେ ଜାଣିପାରେ, ତେବେ କୌଣସି ଅସୁବିଧା ହେବ ନାହିଁ । ହିଁ, କହୁଥିଲି, ତୁମେ ବହୁତ ଦେଖିସାରିଥିଲେ ବି ଏବେ ମଧ୍ୟ କିଛି ଦେଖିବାର ଅଛି ।'

ଆମେ ହତବୁଦ୍ଧି ହୋଇ ପରସ୍ପର ମୁହଁକୁ ଅନେଇଲୁ । ଏ ବ୍ୟାପାରରେ କାହା ମନରେ କ'ଣ ଖେଳୁଛି ଜାଣିବାକୁ ଭାରି ଇଚ୍ଛା ହେଉଥାଏ । ପୁଣି ସେଇ ବିଦପଭରା ହସ– 'ଇଚ୍ଛା ତ ହେବ ସେମିତି । ତେବେ ତୁମେମାନେ ଫେରିଗଲା ପରେ ନିଜଭିତରେ କଥାବାର୍ତ୍ତା ହୋଇପାରିବ । ମୋର ବି ଇଚ୍ଛା ତୁମେମାନେ ଫେରିଯାଅ । ତେବେ ତା' ଆଗରୁ ତୁମକୁ କେତୋଟି କଥା କହି ରଖେ । ଡ: ମାରାକଟ୍, ତୁମେ

ଏମାନଙ୍କ ମଧ୍ୟରେ ସବୁଠାରୁ ବଡ଼, ତୁମକୁ ହିଁ କୁହେ । ମୁଁ କିଏ ତୁମେ ଅବଶ୍ୟ ଜାଣ । ମୋ ବିଷୟରେ କେହି କିଛି କହିବାକୁ ଇଚ୍ଛା କରିବା ବା ଭାବିବା ମାତ୍ରକେ ମୁଁ ତା' ଜାଣି ପାରେ । ଆଉ ମୋର ଏହି ଦରିଦ୍ର କୁଟୀରରେ କେହି ଦୟା କରି ପାଦ ଦେଲେ ମୋତେ ଆସି ତାହା ସହିତ ସାକ୍ଷତ୍ କରିବାକୁ ପଡ଼େ । ଏଇଥିପାଇଁ ସେଠାର ସେଇ ବିଚାରାମାନେ ଏ ସ୍ଥାନଟି ପରିହାର କରିଛନ୍ତି ଏବଂ ଇଚ୍ଛା କରିଥିଲେ ଯେ ତୁମେମାନେ ବି ତାହା ପରିହାରକର । ତୁମେମାନେ ସେମାନଙ୍କ କଥା ଶୁଣି କାର୍ଯ୍ୟ କରିଥିଲେ ଭଲହୋଇଥାନ୍ତା ।

'ମୋତେ ତୁମମାନଙ୍କର କାମ ଗୋଟାଏ ପ୍ରହେଳିକା ଭଳି ମନେହେଉଛି । ତୁମର ପୃଥିବୀର ରତିଏ ବିଜ୍ଞାନକୁ ସମ୍ବଳ କରି ତୁମେମାନେ ଭାରି ମୁଣ୍ଡ ଖେଳାଉଛ । ମୁଁ ଅମ୍ଳଜାନ ବିନା ବଞ୍ଚିଛି କେମିତି ? ତୁମମାନଙ୍କ ଭିତରେ ବି କୌଣସି କୌଣସି ଲୋକ ଅମ୍ଳଜାନ ବିନା ଅନେକବେଳ ବଞ୍ଚି ରହିପାରନ୍ତି । ସମାଧିସ୍ଥ ଅବସ୍ଥାରେ କେହି କେହି ନିଃଶ୍ୱାସ ନ ନେଇ ବହୁତ ଦିନ ରହିପାରନ୍ତି – ମୁଁ ତାଙ୍କରି ଭଳି । ତେବେ ମୁଁ ଅଛି ସଜ୍ଞାନ ଓ ସକ୍ରିୟ ଅବସ୍ଥାରେ ।

'ତୁମେ ଭାବି ଠିକ୍ କରିପାରୁନା ଯେ ମୋ କଥା ତୁମେ ଶୁଣିପାରୁଚ କିପରି ! ବୈଦ୍ୟୁତିକ ଢେଉକୁ ପବନ ଢେଉରେ ପରିଣତ କରିବା ତ ବେତାରର ମୂଳ କଥା ! ମୁଁ ମୋର କଥାସବୁକୁ ବୈଦ୍ୟୁତିକ ଉଚ୍ଚାରଣରୁ ବାୟବୀୟ ଶବ୍ଦରେ ପରିଣତ କରୁଚି, ଆଉ ସେ ଶବ୍ଦ ତୁମର ସେହି ମୁଖା ଭିତରର ପବନ ଦେଇ ତୁମ କାନରେ ପହଞ୍ଚୁଛି ।

'ଆଉ ମୋର ଇଂରାଜୀ ? ଆଶା କରେ ମନ୍ଦ ଇଂରାଜୀ କହୁନାହିଁ ! ପୃଥିବୀରେ ତ କିଛି ଦିନ ଥିଲି । କେତେ ଦିନ – ଏଗାର ହଜାର ବର୍ଷ ନା ବାରହଜାର ? ବୋଧହୁଏ ବାରହଜାର ବର୍ଷ । ମଣିଷର ସବୁ ଭାଷା ଶିଖିବାକୁ ସମୟ ପାଇଛି ମୁଁ । ଅନ୍ୟାନ୍ୟ ଭାଷାଠାରୁ ଇଂରାଜୀ ଯେ ବେଶି ଭଲ କହିପାରେ ତା' ନୁହେଁ ।

'ଆଚ୍ଛା, ଏଥର ଦରକାରୀ କଥା କୁହେ ଶୁଣ । ମୁଁ ବେୟାଲ-ସୀପା । ମୁଁ ପ୍ରଭୁ ଘୋରଦର୍ଶନ । ମୁଁ ହେଉଛି ସେଇ ଯିଏ ପ୍ରକୃତିର ରହସ୍ୟକୁ ଏତେଦୂର ଆୟତ୍ତ କରିଚି ଯେ ମୃତ୍ୟୁକୁ ବି ତୁଚ୍ଛ କରିପାରିଚି । ବର୍ତ୍ତମାନ ଅବସ୍ଥା ଏମିତି ଯେ ମୁଁ ଇଚ୍ଛା କଲେ ବି ମରି ପାରିବି ନାହିଁ । ଯଦି ମୋତେ ମରିବାକୁ କେବେ ପଡ଼େ ତେବେ ମୋ ଇଚ୍ଛାଶକ୍ତିଠାରୁ ଅଧିକ ବଳବାନ୍ କୌଣସି ଇଚ୍ଛାଶକ୍ତିର ପ୍ରୟୋଜନ ହେବ । ଏ ଦିଗରୁ ଦେଖିଲେ ତୁମମାନଙ୍କ ଅବସ୍ଥା ବରଂ ଭଲ । ମୃତ୍ୟୁ ଭୟଙ୍କର ମନେହୋଇପାରେ, କିନ୍ତୁ ଅନନ୍ତ ଜୀବନ ବହୁଗୁଣରେ ଅଧିକ ଭୟଙ୍କର । ଏ ଦୁନିଆର ଲୋକେ ଚିରକାଳ ଧରି ମୋତେ ପଛରେ ପକାଇ ଚାଲିଯାଉଥିବେ ଆଉ ମୁଁ ଯେମିତି କେବଳ ଇତିହାସର ପଥ କଡ଼ରେ ପଡ଼ିରହିଥିବ । ଏମିତି ଭାବରେ ତ ସମଗ୍ର

ମଣିଷ ଜାତି ଉପରେ ମୋ ମନ ବିଷେଇଯାଇଛି । ବର୍ତ୍ତମାନ ମୁଁ ସୁବିଧା ପାଇଲେଇ ସେମାନଙ୍କର ଅନିଷ୍ଟ କରେ । କେମିତି କରେ ? ଯେଉଁଠି ଅଛ ମନ୍ଦ, ଯେଉଁଠି ଅଛି ଅନ୍ୟାୟ ଇଚ୍ଛା, ସେଇଠି ମଣିଷ ମନ ମୋ ଅକ୍ତିଆରରେ; ମୁଁ ତାକୁ ମୋ ମନଇଚ୍ଛା ଚଳାଏ । ହୂନ୍‌ମାନେ ଯେତେବେଳେ ଇଉରୋପର ଅଧେ ଛାରଖାର କଲେ ସେତେବେଳେ ମୁଁ ଥିଲି ତାଙ୍କ ସହିତ । ସାରାସେନ୍‌ମାନେ ଯେତେବେଳେ ଧର୍ମ ନା'ରେ ଅନ୍ୟ ଧର୍ମର ଲୋକମାନଙ୍କୁ ଖଣ୍ଡାରେ ହାଣିଲେ ମୁଁ ତାଙ୍କ ସହିତ ଥିଲି । ଏମିତି ଆହୁରି ଅନେକ ଅଛି । ସମୁଦ୍ରତଳର ଏଇ ମୂଷାମାନଙ୍କ କଥା ପ୍ରାୟ ଭୁଲିଯାଇଥିଲି । ଦେଖୁଚି ଏମାନେ ଅନେକଦିନ ରହିଗଲେ, ଆଉ ନ ରହିଲେ ଚଳିବ । ଯାହାର କ୍ଷମତାରେ ଏମାନେ ଆଜି ଏଠାରେ ରହିଚନ୍ତି ସେ ମୋତେ ତୁଚ୍ଛଜ୍ଞାନ କରିଥିଲା । ଯେଉଁ ବିପର୍ଯ୍ୟୟରେ ସେମାନଙ୍କ ଦେଶ ଧ୍ୱଂସ ସେଥିରୁ ବଞ୍ଚିବାର ଉପାୟ ସେ ହିଁ କରିଥିଲା । ତା' ବୁଦ୍ଧି ବଳରେ ଏମାନେ ରକ୍ଷାପାଇଗଲେ । ଆଉ ମୁଁ ରକ୍ଷା ପାଇଲି ମୋ ନିଜ କ୍ଷମତା ବଳରେ । ବର୍ତ୍ତମାନ ଏମାନଙ୍କ ଜୀବନ-ନାଟକରେ ଯବନିକା ଟାଣିଦେବି ଭାବୁଚି ।'

କୁର୍ତ୍ତାଭିତରୁ ବକଟେ ଲେଖା ବାହାର କରି ସେ କହିଲା, 'ଏଇଟି ନେଇ ପାଣି ମୂଷାମାନଙ୍କ ସର୍ଦାରକୁ ଦିଅ । ବଡ଼ ଦୁଃଖର କଥା ଯେ ତୁମେ କେଇ ଜଣ ଭଦ୍ରଲୋକ ସେମାନଙ୍କ ସହିତ ଏକା ଅଦୃଷ୍ଟର ଭାଗୀ ହେବ । ତେବେ ତୁମେମାନେ ଏମାନଙ୍କ ଏଇ ଦୂରଦୃଷ୍ଟିର କାରଣ ହୋଇଥିବାରୁ ଏହା ଅନୁଚିତ କହି ହେବ ନାହିଁ । ପରେ ପୁଣି ଦେଖାହେବ । ସେ ପର୍ଯ୍ୟନ୍ତ ତୁମେମାନେ ଏଇ ସବୁ ଛବି ଓ କାରୁକାର୍ଯ୍ୟ ଦେଖିନିଅ ଭଲକରି । ତୁମେମାନେ ଏସବୁ ବିଷୟରେ ଯାହା ଭାବ ନା କାହିଁକି, ମୁଁ ଏସବୁ କରାଇ ବିଶେଷ ଆନନ୍ଦ ପାଇଚି । ମୋ ମନରେ କୌଣସି ଖେଦ ନାହିଁ । ସେ ସବୁ ଦିନ ଯଦି ଫେରିଆସନ୍ତା ତେବେ ପୁଣି ସେମିତି କରନ୍ତି, ଆହୁରି ବେଶି କରି କରନ୍ତି–କେବଳ ଏହି ମାରାତ୍ମକ ଅନନ୍ତ ଜୀବନ ଲାଭର ଚେଷ୍ଟା ଆଉ କରନ୍ତି ନାହିଁ । ଓଆର୍ଡ୍ ଯାହା ହେଉ ନା କାହିଁକି ଏହି କ୍ଷମତାଲାଭ ବିଷୟରେ ସେ ମୋଠୁଁ ଅଧିକ ବୁଦ୍ଧିମାନର କାର୍ଯ୍ୟ କରିଥିଲା । ସେ ଏବେ ବି ପୃଥିବୀକୁ ଆସେ, କିନ୍ତୁ ଗୋଟାଏ ଅଶରୀରୀ ଆତ୍ମା ଭାବରେ, ଦେହଧାରୀ ମଣିଷ ଭାବରେ ନୁହେଁ । ଆଚ୍ଛା, ତେବେ ବର୍ତ୍ତମାନ ଆସେ ।'

ତା'ପରେ ସେ ଆମ ଆଖି ସାମନାରେ ମିଳାଇଗଲା । ଯେଉଁ ଖମ୍ୱଟିକୁ ଡେରି ସେ ଛିଡ଼ାହୋଇଥିଲା ତାହା ଛାଡ଼ିଦେଇ ଦୂରେଇ ଛିଡ଼ାହେଲା । ତା' ଶରୀରର ସୀମାରେଖା ଅସ୍ପଷ୍ଟ ହୋଇଗଲା । ଆଖି ଦି'ଟା ଯେମିତି ଲିଭ ଆସିଲା । ତା'ପରେ ଦେଖିଲି ସେ ନାହିଁ – କେବଳ କେତେକ ଧୂଆଁର କୁଣ୍ଡଳୀ ବୁଲି ବୁଲି ଉପରକୁ ଉଠିଯାଇଛି ।

# ଏଗାର

ଇତିମଧ୍ୟରେ ଗୋଟାଏ ସେଇ ନେଳି-ନାଲି ରଙ୍ଗର ଗେଣ୍ଡା ସ୍କାନ୍‌ଲନ୍‌ର ଦେହ ଉପରେ ଚଢ଼ିଯାଇ କାନ୍ଧଯାଏ ଉଠିଯାଇଥିଲା । ସେଇଟାକୁ ଝାଡ଼ିପକାଇ ଆମେ ସେ ଭୟାନକ ସ୍ଥାନରୁ ଟଳି ଟଳି ବାହାରିଆସିଲୁ । ସେଠି ପାଦ ଦେବା ଭଳି ଦୁର୍ବୁଦ୍ଧି ଆମର କାହିଁକି ହେଲା ବାରମ୍ବାର କେବଳ ଏଇ କଥା ଭାବିହେଉଥାଉ । ଯାହାହେଉ, ଯେତେବେଳେ ସେଇ ଅଧା ଅନ୍ଧାର ସ୍ଥାନରୁ ବାହାରି ପୁଣି ସାଗର ଅନୁପ୍ରଭାର ଆଲୁଅକୁ ଆସି ପହଞ୍ଚିଲୁ, ଚାରିପଟେ ପୁଣି ସ୍ୱଚ୍ଛ ଜଳ ଦେଖିବାକୁ ପାଇଲୁ । ସେତେବେଳେ ମନଟା ଟିକିଏ ଉଶ୍ୱାସ ଲାଗିଲା । ଘଣ୍ଟାକ ଭିତରେ ଆମେ ଆମ ନିଜ କୋଠରିକୁ ଫେରିଆସିଲୁ । ପ୍ରଫେସରଙ୍କର ଏବଂ ମୋର ଯେମିତି ଆଉ ପାଟି ଫିଟୁ ନ ଥାଏ, କିନ୍ତୁ ସ୍କାନ୍‌ଲନ୍‌କୁ ଦେଖିଲି, ସେ ସେବେ ବି ଦବି ନାହିଁ । ସେ କହିଲା, 'ଏଥର ନୂଆ ସାଙ୍ଗରେ ଲାଗିଲା ଆମର ଟକ୍‌କର । ସେ ବୋଧେ ଆଉ କେହି ନୁହେଁ, ସ୍ୱୟଂ ସଇତାନ । ବର୍ତ୍ତମାନ କଥା ହେଲା ତାକୁ ଅକ୍ତିଆରକୁ ଅଣାଯିବ କେମିତି ?'

ଡକ୍‌ଟର ମାରାକଟ୍ କିଛିକ୍ଷଣ ଚିନ୍ତାମଗ୍ନ ରହିଲେ । ତା'ପରେ ଘଣ୍ଟି ବଜାଇ ଆମର ସେଇ ହଳଦିଆ ପୋଷାକ ପିନ୍ଧା ପରିଚାରକକୁ ଡକାଇଲେ । ସେ ଆସିଲାରୁ କହିଲେ, 'ମାଣ୍ଡା' । ଟିକିଏ ପରେ ମାଣ୍ଡା ଆସି ଆମ ବଖରାରେ ପହଞ୍ଚିଲେ । ମାରାକଟ୍ ତାଙ୍କ ହାତକୁ ସେଇ ସାଂଘାତିକ ଚିଠିଖଣ୍ଡକ ବଢ଼ାଇଦେଲେ ।

ସେହି ସମୟରେ ମୁଁ ମାଣ୍ଡାକୁ ମୋ ମନ ଭିତରେ ଯେମିତି ପ୍ରଶଂସା କରିଥିଲି ସେମିତି ଆଉ କେବେ କରିନାହିଁ । ଆମେ ତାଙ୍କର କେହି ନୋହୁଁ, ସାକ୍ଷାତ୍ ମୃତ୍ୟୁ ହାତରୁ ସେ ଆମକୁ ବଞ୍ଚାଇଲେ । ଆମେ ଆମର ଅନ୍ୟାୟ କୌତୂହଳ ମେଣ୍ଟାଇବାକୁ ଯାଇ ତାଙ୍କ ଜାତିଗୋଟାକର ଓ ତାଙ୍କ ନିଜର ସର୍ବନାଶ ଡାକିଆଣିଛୁ । ସେଇ ଲେଖାଖଣ୍ଡିକ ପଢୁ ପଢୁ ତାଙ୍କ ମୁହଁ ପାଉଁଶ ପରି ଫିକାପଡ଼ିଗଲା । ତଥାପି ଯେତେବେଳେ ସେ ତାଙ୍କର ବିଷାଦଗ୍ରସ୍ତ ପିଙ୍ଗଳ ଆଖି ଦିଓଟି ଉଠାଇ ଆମ ଆଡ଼କୁ ଅନାଇଁଲେ ସେତେବେଳେ ସେ ଆଖିରେ ବିରକ୍ତ ବା ଭର୍ତ୍ସନାର କୌଣସି ଲକ୍ଷଣ ଦେଖିଲି ନାହିଁ । କେବଳ ସେ ଧୀରେ ଧୀରେ ମୁଣ୍ଡ ହଲାଇଲେ, ଯେମିତି ମନେହେଲା ଦାରୁଣ ନୈରାଶ୍ୟରେ ସେ ଏକାବେଳକେ ଭାଙ୍ଗିପଡ଼ିଛନ୍ତି । 'ବେଥ୍ୟାଲ-ସୀପା ! ବେଥ୍ୟାଲ୍-ସୀପା !' କହି କହି ସେ ପ୍ରାୟ ଆର୍ତ୍ତନାଦ କରିଉଠିଲେ । ଦୁଇ ହାତରେ ଆଖି ଢାଙ୍କି ଯେପରି କୌଣସି ଏକ ଭୟାନକ ଦୃଶ୍ୟକୁ ଆଢୁଆଳ କରିବାକୁ ଚାହିଁଲେ । ଘର ଭିତରେ ଅସ୍ଥିରଭାବରେ କିଛି ସମୟ ଏପାଖ ସେପାଖ ହେବା ପରେ ଶେଷରେ ଆଟଲାଣ୍ଟିୟ ସମାଜର ସଭିଙ୍କି ସେଇ

ଭୟଙ୍କର ସଂବାଦ ଶୁଣାଇବା ପାଇଁ ଦୌଡ଼ି ଚାଲିଗଲେ । କେଇ ମିନିଟ୍ ପରେ ଆମେ ଶୁଣିପାରିଲୁ ଘଣ୍ଟାଧ୍ୱନି ସମସ୍ତଙ୍କୁ ପ୍ରେକ୍ଷାଗୃହକୁ ଆହ୍ୱାନ କରୁଛି ।

ମୁଁ କହିଲି, 'ଆମେ ଯିବା କି ?'

ଡା. ମାରାକଟ୍ ମୁଣ୍ଡ ହଲାଇଲେ । କହିଲେ, 'ଆମେ କ'ଣ କରିପାରିବୁ ? ଆଉ ସେମାନେ ବା କ'ଣ କରିପାରିବେ ? ଦାନବ ପରି ଯାହାର କ୍ଷମତା, ତା' ଆଗରେ ସେମାନେ କ'ଣ ?'

'ବିଲେଇ ଆଗରେ ପଲେ ମୂଷା ଯାହା'–ସ୍କାନ୍‌ଲନ୍ କହିଲା–'କିନ୍ତୁ ଉପାୟ କିଛି ଗୋଟେ ଆମକୁ ଯେମିତି ହେଲେ କରିବାକୁ ପଡ଼ିବ । ସଇତାନକୁ ଡାକିଆଣିସାରି, ସେ ଭାଲୁକୁ ଆମ ହିତକାରୀ ବନ୍ଧୁଙ୍କୁ ଧରାଇ ଦେଇ ଆମେ ଆମ ବାଟ କାଟିପାରୁନା ବୋଧେ ।'

ମୁଁ ଉତ୍ସାହ ପାଇ କହିଲି, 'ହଁ ହଁ, ତୁମେ କି ଉପାୟ କରୁଚ କହ ।' ସ୍କାନ୍‌ଲନ୍‌ଙ୍କ ଥଟ୍ଟା ତାମସା ପଛରେ ବି ଦିଶୁଥାଏ ଯନ୍ତ୍ରକୁଶଳୀର ତୀକ୍ଷ୍ଣ ବ୍ୟାବହାରିକ ବୁଦ୍ଧି । ସେ କହିଲା, 'ବୋଧେ ଏ ମହାତ୍ମା ନିଜକୁ ଯେତେ ନିରାପଦ ମନେକରୁଚନ୍ତି ଠିକ୍ ସେତିକି ନିରାପଦ ସେ ନୁହନ୍ତି ।'

'ତୁମେ ଭାବୁଛ ଆମେ ଆଗକରି ତା' ଉପରେ ଚଢ଼ାଉ କଲେ କେମିତି ହୁଅନ୍ତା ?'

ଡକ୍‌ଟର କହିଉଠିଲେ–'ପାଗଳ'.

ସ୍କାନ୍‌ଲନ୍ ତାଙ୍କ ଟେବୁଲର ଦରଜା ପାଖକୁ ଗଲା । ତା'ପରେ ଯେତେବେଳେ ସେ ଆମ ଆଡ଼କୁ ମୁହଁ କଲେ ତାଙ୍କ ହାତରେ ଗୋଟିଏ ବଡ଼ ଛ–କୋଠରିଆ ରିଭଲ୍‌ଭର୍ ।

ସେ କହିଲା, 'ଏଇଟା କେମିତିକା ମାଲୁମ ପଡୁଚ ? ଆମର ସେ ପାଣିଭର୍ତ୍ତି ଜାହାଜଟାକୁ ଆମେ ଯେତେବେଳେ ଯାଇଥିଲୁ ସେତିକିବେଳେ ମୁଁ ଏଇଟିକୁ ଯୋଗାଡ଼ କରିଥିଲି । ଡଜନେ ଗୁଳି ଅଛି ଯା ଭିତରେ । ଠିକ୍ ସେତିକିଟି କଣା ଯଦି କରିଦିଏ ସେଇ ଶକ୍ତ-ପ୍ରାଣ ମହାତ୍ମାଙ୍କ ଦେହରେ ତା'ହେଲେ ବୋଧେ ଥୋଡ଼ାଏ ଭେଳିକି ନିଗାଡ଼ି ଯାଇପାରେ ।

... ହେ ଭଗବାନ୍ !

'ଓଃ–ଇଏ କ'ଣ ?'

ରିଭଲ୍‌ଭର୍‌ଟା ଝଣ ଝଣ ହୋଇ ହାତରୁ ତଳକୁ ଖସିପଡ଼ିଲା ଆଉ ସେ ବାଁହାତରେ ତା' ଡାହାଣ ହାତ କଚଟିକୁ ଧରିପକାଇ ଯନ୍ତ୍ରଣାରେ ମୋଡ଼ିହୋଇ ଯାଉଥାଏ । ତା'ର ଡାହାଣହାତଟି ଗୋଟାକଯାକ ଖିଲି ମାରିଯାଇଥାଏ, ହାତର ପେଶୀଗୁଡ଼ିକ ଗଛ ଚେର ଭଳି ଫୁଲି ଗୁଆ ବାହାରିପଡ଼ିଥାଏ । ବିଚାରାର କପାଳରୁ ଝାଳ ବୋହିପଡ଼ିଲା । ଏକାବେଳକେ ହାଲିଆ ଓ ବେଦମ୍ ହୋଇ ସେ ତା' ବିଛଣା ଉପରେ ଆସି ପଡ଼ିଗଲା ।

କହିଲା, 'ନାଃ, ପଟକନ୍ ଖାଇଗଲି ।.....ଧନ୍ୟବାଦ, ଯନ୍ତ୍ରଣାଟା ଟିକେ କମିଲା । ଉଇଲିଅମ୍ ସ୍କାନ୍‌ଲନ୍ ନକ୍‌ଆଉଟ୍ ହୋଇଗଲା । ହେଲେ ମୋର ଶିକ୍ଷା ହୋଇଗଲା, ରିଭଲ୍‌ଭର ଧରି ଯମ ସାଙ୍ଗରେ ଲଢ଼ାଇ କରି ହେବ ନାହିଁ । ତାକୁ ଓସ୍ତାଦ କବୁଲ କଲି ।'

ମାରାକଟ୍ କହିଲେ, 'ହଁ ତୁମର ଶିକ୍ଷା ହେଲା, ବଡ଼ କଠିନ ଶିକ୍ଷା ।'

'ତାହେଲେ ଆପଣ ଭାବୁଚନ୍ତି ଆମର କୌଣସି ଆଶା ନାହିଁ ?'

'ଆମର ପ୍ରତ୍ୟେକ କଥା ଓ କାର୍ଯ୍ୟ ଯେତେବେଳେ ସେ ଜାଣିପାରୁଛି ସେତେବେଳେ ଆମେ ଆଉ କ'ଣ କରିପାରୁ ? ହେଲେ ଆମେ ଚେଷ୍ଟା ଛାଡ଼ିବୁ ନାହିଁ ।' ଏହା କହି ସେ ମୁହୂର୍ତ୍ତେ କାଳ ଭାବିଲେ । ତା' ପରେ କହିଲେ, 'ସ୍କାନ୍‌ଲନ୍, ତୁମେ ଚୁପ୍ ହୋଇ ଟିକିଏ ଶୋଇରହିବା ବୋଧେ ଭଲ । ଯେଉଁ ଧକ୍‌କା ତୁମ ଉପର ଦେଇ ଗଲା ତାକୁ ସମ୍ଭାଳି ଉଠିବାକୁ କିଛି ସମୟ ଲାଗିବ ।'

ସ୍କାନ୍‌ଲନ୍ ତେବେ ବି ଦବିଲାବାଲା ନୁହେଁ । କହିଲା, 'ଯଦି କିଛି ଗୋଟାଏ କରିବା ସ୍ଥିର କରନ୍ତି ତେବେ ମୁଁ ବି ସାଥିରେ ଅଛି ଜାଣିବେ । ଅବଶ୍ୟ ଜୋର୍ ଖଟାଇବାଟା ବୋଧେ ବାଦ୍ ଦେବାକୁ ପଡ଼ିବ ।' ସେବେବି ତା'ର ମୁଖର ଚେହେରା ଓ ହାତ ଗୋଡ଼ ଥରାରୁ ଜଣାପଡୁଥାଏ ସେ କି ଯନ୍ତ୍ରଣା ସହିଛି ।

'ତୁମ କଥା ଧରିଲେ କହିବି କିଛି ହେଲେ କରିବା ସ୍ଥିର କରି ନାହିଁ । କିଛି କରିବାର ଭୁଲ ଉପାୟଟି କ'ଣ ଅନ୍ତତଃ ସେତିକି ଆମେ ଶିଖିଲୁ । ଯେମିତି ଭାବରେ ହେଉ ବଳପ୍ରକାଶ ବୃଥା । ଆମର ଶତ୍ରୁ କାମ କରୁଛି ଚୈତନ୍ୟର ଅନ୍ୟ ଏକ ସ୍ତରରେ– ସେଇଟା ଆତ୍ମିକ ସ୍ତର । ହେଉ୍‌ଲେ, ତୁମେ ଏଇଠି ରହିଥାଅ, ମୁଁ ମୋର 'ଷ୍ଟଡ଼ି'କୁ ଯାଉଛି । ଏକୁଟିଆ ରହିଲେ କେଜାଣି କ'ଣ କର୍ତ୍ତବ୍ୟ ଜାଣିପାରେ ।'

ସ୍କାନ୍‌ଲନ୍ ଓ ମୋର ମାରାକଟ୍‌ଙ୍କ ଉପରେ ଅସୀମ ନିର୍ଭରଭାବ ଜନ୍ମିଥାଏ । ମଣିଷ ବୁଦ୍ଧିରେ ଯଦି ଆମକୁ ପରିତ୍ରାଣ ମିଳେ ତା'ହେଲେ ନିଶ୍ଚୟ ତାଙ୍କରି ବୁଦ୍ଧିଦ୍ୱାରା ତା' ହେବ । ଅଥଚ ଏହା ମଧ୍ୟ ଠିକ୍ କଥା ଯେ ଆମେ ଯେଉଁଠି ଆସି ଠିଆହୋଇଛୁ ସେଠି ମଣିଷର କୌଣସି ଶକ୍ତି ଖଟେ ନାହିଁ । ଯେଉଁ ଅଲୌକିକ ଶକ୍ତିର ଆମେ ଥଳକୂଳ ପାଉ ନ ଥାଉ ତା' ଆଗରେ ନିଜକୁ ଶିଶୁଭଳି ଅସହାୟ ଲାଗୁଥାଏ । ସ୍କାନ୍‌ଲନ୍ ଶୋଇପଡ଼ିଥାଏ, କିନ୍ତୁ ନିଦ ମଝିରେ ବି ତାକୁ ଯେମିତି ଆରାମ ମିଳୁନଥାଏ । ମୁଁ ତା' ପାଖରେ ବସି ଭାବୁଥାଏ କେବଳ ଗୋଟିଏ କଥା, ସେ କଥାଟି ଏହା ନୁହେଁ ଯେ ଆମେ କି ଉପାୟରେ ଏ ବିପଦରୁ ଉଦ୍ଧାରପାଇବୁ – ବରଂ ଭାବୁଥାଏ ସେ ବିପଦ କେତେବେଳେ କେଉଁ ରୂପ ଧରି ଦେଖାଦେବ । ସାଗରର ଗଭୀରତମ ତଳଦେଶକୁ ତୁଚ୍ଛ କରି ଏତେକାଳ ଯେଉଁମାନେ ବଞ୍ଚିରହିପାରିଥିଲେ ଏବେ ଯେକୌଣସି ମୁହୂର୍ତ୍ତରେ ସେମାନଙ୍କର ଅନ୍ତିମ ଦଶା ଆସି ପହଞ୍ଚିଯିବ–ଆଉ ତାଙ୍କ ସହିତ ଆମର ମଧ୍ୟ । ହୁଏତ

ଆଶ୍ରୟସଦନର ଛାତ ଭାଙ୍ଗିପଡ଼ିବ, ନୋହିଲେ କାନ୍ଥ ଭୁଶୁଡ଼ିଯିବ । ଏତେ ଦିନ ଯେଉଁ ପାଣକୁ ଦୂରକୁ ଅଟକାଇ ରଖାଯାଇଥିଲା ସେଇ ପାଣି ମାଡ଼ି ଆସିବ ଚତୁର୍ଦ୍ଦିଗରୁ ।

ହଠାତ୍ ଶୁଣିପାରିଲି ପୁଣି ସେଇ ଘଣ୍ଟାଧ୍ୱନି । ସେ ଶବ୍ଦରେ ଛାତି ଭିତରଟା କେମିତି ହୋଇଗଲା ପରି ଲାଗିଲା । ମୁଁ ଠିଆହୋଇପଡ଼ିଲି । ସ୍କାନ୍‌ଲନ୍ ବି ବିଛଣାରେ ଉଠି ବସିଲା । ସେ ଘଣ୍ଟା ଯେମିତି ପାଗଳ ପରି ବାଜିଚାଲିଛି । ତା'ର ସେଇ ଏକବାଗିଆ ଆହ୍ୱାନର ଉତ୍ତର ନ ଦେଇ ଯେମିତି ରହିହେବନାହିଁ ।

ସ୍କାନ୍‌ଲନ୍ କହିଲା, 'ଏଥର ବୋଧେ ସେଇ ତା' ସାଙ୍ଗରେ ଏମାନଙ୍କର ଟକ୍‌କର ଲାଗିଲା । ତା' ପାଖକୁ ଯିବା ଆମର ଉଚିତ ।'

'କିନ୍ତୁ ଆମେ ଯାଇ କରିବୁ କ'ଣ ?'

'ଧର, ଆମକୁ ଦେଖି ସେମାନେ ଟିକେ ଭରସା ପାଇପାରନ୍ତି । ମୋଟରେ, ସେମାନେ ଯେମିତି ମନେନକରନ୍ତି ଯେ ଘାଟି ବେଳକୁ ଆମେ ଆମ ବାଟ କାଟିଲୁ । ଡକ୍ କାହାନ୍ତି ?'

'ସେ ତାଙ୍କ 'ଷଡ଼ି'ରେ । ତୁମେ ଠିକ୍ କହୁଚ । ଆମର ଉଚିତ ହେଉଚି ସେମାନଙ୍କ ପାଖକୁ ଯିବା । ସେମାନେ ଯେପରି ଜାଣିବେ ଯେ ଆମେ ତାଙ୍କ ଅଦୃଷ୍ଟରୁ ଭାଗ ନେବାକୁ ପ୍ରସ୍ତୁତ ।

'ସେ ବିଚରାଏ ଆମରି ଉପରେ ନିର୍ଭର କରୁଛନ୍ତି ମନେହୁଏ । ହୋଇପାରେ ସେମାନଙ୍କୁ ଆମଠୁ ବେଶି ବିଦ୍ୟା ଜଣାଅଛି । କିନ୍ତୁ ଆମର ଛାତି ଜୋର୍ ବେଶି ପରା । ସେମାନେ ସେମାନଙ୍କ ପୂର୍ବପୁରୁଷଙ୍କଠୁ ଯାହା ପାଇଥିଲେ ବୋଧେ ସେତିକି କେବଳ ସମ୍ବଳ କରିଚନ୍ତି । ଆଉ ଆମେ ଯାହା ପାଇଚୁ ସେଇଟା ଆମକୁ ନିଜେ ଖୋଜି ବାହାର କରିବାକୁ ପଡ଼ିଚି । ଛାଡ଼, ମୁଁ କହେ, ଯଦି ପ୍ରଳୟ ଆସିବ ତ ଆସୁ ।'

କିନ୍ତୁ ଆମେ ଦୁଆର ଆଡ଼କୁ ଆଗେଇବା ମାତ୍ରେ ଏକ ଆଶ୍ଚର୍ଯ୍ୟ ବ୍ୟାପାର ଦେଖିଲୁ । ଡକ୍‌ଟର ମାରାକଟ୍ ଆସି ଆମ ଆଗରେ ଠିଆହେଲେ । କିନ୍ତୁ ଆମେ ଯେଉଁ ମାରାକଟ୍‌ଙ୍କୁ ଜାଣିଥିଲୁ ଇଏ କ'ଣ ସେଇ ? ସେଇ ଶାନ୍ତ ପଣ୍ଡିତ କେଉଁଠି ଅନ୍ତର୍ଦ୍ଧାନ ହେଲେଣି । ତାଙ୍କ ବଦଳରେ ଆସି ଉଭାହୋଇଚନ୍ତି ଜଣେ ଅତିମାନବ, ଏକ ମହାନ୍ ନେତା, ଗୋଟିଏ ଅମିତତେଜ ଆତ୍ମା, ଯେ ମାନବଜାତିକୁ ଗଢ଼ିନେଇପାରିବେ ନିଜ ଇଚ୍ଛା ଅନୁସାରେ । ତାଙ୍କ ମୁହଁର ପ୍ରତ୍ୟେକ ରେଖା ଯେମିତି ଶକ୍ତି ଓ ସଂକଳ୍ପ ବିକରଣ କରୁଥାଏ ।

ସେ କହିଲେ, 'ହଁ, ଏବେ ମଧ୍ୟ ହୁଏତ ସମୟ ଅଛି । କିନ୍ତୁ ଏହିକ୍ଷଣି ଆସ, ନଚେତ୍, ରକ୍ଷା ମିଳିବ ନାହିଁ । ସବୁ କଥା ମୁଁ ପରେ ବୁଝାଇ କହିବି–ଯଦି 'ପରେ' ବୋଲି ଆମର କିଛି ରହେ......ହଁ ହଁ, ଆମେ ଯାଉଛେ ।'

ଶେଷ କଥା କେତୋଟି ସେ କହିଲେ କେଇଜଣ ଆଟଲାଣ୍ଟିୟଙ୍କୁ ଉଦ୍ଦେଶ୍ୟ କରି । ସେମାନେ ଦୁଆର ପାଖକୁ ଆସି ବ୍ୟଗ୍ର ଭାବରେ ଆମକୁ ଇସାରା କରୁଥାନ୍ତି ଯବାପାଇଁ । ଆମେ ପ୍ରେକ୍ଷାଗୃହକୁ ଯାଇ ସାମନା ଧାଡ଼ିରେ ଆମର ନିର୍ଦ୍ଦିଷ୍ଟ ଜାଗାରେ ବସିଲୁ । ଚାରିଆଡ଼ୁ ଯେଉଁ ଅସ୍ଫୁଟ ଗୁଞ୍ଜନ ଉଠିଲା ସେଥିରୁ ଜାଣିଲୁ ମନଭିତରେ ସଭିଏଁ ତାରି ମଧ୍ୟରେ ଟିକିଏ ଆରାମ ପାଇଚନ୍ତି, ଭରସା ପାଇଚନ୍ତି ।

ବାସ୍ତବିକ ଆମ ଦ୍ୱାରା ଯଦି କିଛି ସାହାଯ୍ୟ ଦେବାକୁ ଅଛି ତା'ହେଲେ ଏହି ତ ବେଳ । କାରଣ ଦେଖିଲି ସେଇ ଭୟଙ୍କର ସୁପୁରୁଷ ପ୍ରଭୁ ଘୋରଦର୍ଶନ ଆସି ମଞ୍ଚ ଉପରେ ଉଭାହୋଇଛି । ମହାଭୟରେ କାତର ଜନତା ଆଡ଼କୁ ଚାହିଁ ତା'ର ଚପା ଓଠରେ ଫୁଟି ଉଠିଛି ଏକ ନିଷ୍ଠୁର ପୈଶାଚିକ ହସ । ଏ ଦୃଶ୍ୟ ଦେଖି ସ୍କାନ୍‌ଲନ୍‌ର ସେଇ ବିରାଡ଼ି ଓ ମୂଷାର ଉପମା ମୋର ମନେପଡ଼ିଲା । ଆଟଲାଣ୍ଟିୟମାନେ ପରସ୍ପରକୁ ଜାବୋଡ଼ି ଧରିଥାଆନ୍ତି ଓ ଭୟ ବିସ୍ଫାରିତ ନୟନରେ ସେଇ ମହାଶକ୍ତିମାନ୍ ମୂର୍ତ୍ତିର ନିର୍ଦ୍ଦୟ ମୁହଁକୁ ଅନାଇଁରହିଥାଆନ୍ତି । ସେ ମୁହଁ ଯେପରି ଗ୍ରାନାଇଟ୍ ପଥରରୁ କୁନ୍ଦା ହୋଇଛି । ଯେମିତି ମନେହେଲା ତା' ମୁହଁରୁ ଚରମ ବାର୍ତ୍ତାଟି ଏମାନେ ଶୁଣିସାରିଲେଣି । ମାଣ୍ଡା ସେ ପର୍ଯ୍ୟନ୍ତ ଦୀନଭାବରେ ସଭିଙ୍କ ପକ୍ଷରୁ ଗୋଟିଏ ଦିଓଟି କଥା କହିବାକୁ ପ୍ରୟାସ କରୁଥାନ୍ତି । ସେଥିରେ ସେଇ ପିଶାଚ ମୁହଁର ନିର୍ମମ ବିଦ୍ରୂପ ଭାବ ତୀକ୍ଷଣତର ହେଉଥାଏ । ଅବଶେଷରେ ମାଣ୍ଡାଙ୍କୁ ଚୁପ୍ କରାଇଦେଇ ସେ ତା'ର ଡାହାଣ ହାତଟା ଶୂନ୍ୟକୁ ଟେକିଲା । ସମସ୍ତେ ତୀବ୍ର ହତାଶାରେ ଚିତ୍କାର କରିଉଠିଲେ ।

ଠିକ୍ ସେତିକିବେଳେ ମାରାକଟ୍ ଡେଇଁପଡ଼ି ମଞ୍ଚ ଉପରକୁ ଉଠିଗଲେ । ତାଙ୍କ ମୂର୍ତ୍ତିକୁ ଚାହିଁ ଆମେ ବିସ୍ମିତ ହୋଇଗଲୁ । କୌଣସି ଅଲୌକିକ ଉପାୟରେ ସେ ଯେପରି ଏକ ଭିନ୍ନ ମଣିଷ ପାଲଟିଯାଇଛନ୍ତି । ତାଙ୍କ ଠାଣି, ତାଙ୍କ ଭାବଭଙ୍ଗୀ ଯେମିତି ଯୁବକଭଳି ସହଜ ଓ ସତେଜ । ଆଉ ତାଙ୍କ ମୁହଁରେ ଏପରି ଏକ ଶକ୍ତି ପ୍ରକାଶ ପାଉଥାଏ ଯାହା ମୁଁ ମଣିଷ ମୁହଁରେ କେବେ ଦେଖିନଥିଲି । ସେ ଦୃଢ଼ ପଦକ୍ଷେପରେ ସଳଖେ ଯାଇ ସେଇ ଦୈତ୍ୟ ଆଗରେ ଠିଆହେଲେ । ସେ ଆଶ୍ଚର୍ଯ୍ୟ ହୋଇ ତାଙ୍କ ଆଡ଼କୁ ତରାଟି ଅନାଇଁଲା । କହିଲା, 'କିହୋ, ତୁମର ପୁଣି କ'ଣ କହିବାକୁ ଅଛି ?'

ମାରାକଟ୍ କହିଲେ, 'ମୋର ଏଇ କଥା କହିବାକୁ ଅଛି ଯେ ତୁମର ଦିନ ସରିଲାଣି, ତୁମେ ନିପାତ ଯାଅ ! ନରକ ତୁମ ପାଇଁ ଅପେକ୍ଷାରେ ରହିଛି, ଓହ୍ଲାଇ ଯାଅ ସେଇଠାକୁ । ତୁମେ ଅନ୍ଧକାରର ରାଜା, ଅନ୍ଧକାରର ରାଜ୍ୟକୁ ଯାଅ ।'

ଦାନବର ଆଖିରୁ ନିଆଁହୁଳା ବାହାରିବାକୁ ଲାଗିଲା । ସେ କହିଲା, 'ମୋର ଦିନ ଯଦି କେବେ ସରେ ସେତେବେଳେ ମରଣଶୀଳ ମାନବ ମୁହଁରୁ ମୋତେ ସେ କଥା ଶୁଣିବାକୁ ପଡ଼ିବ ନାହିଁ । ପ୍ରକୃତିର ଗୋପନ ରହସ୍ୟ ମୋର ହସ୍ତଗତ, ତୁମର କି

କ୍ଷମତା ଅଛି ଯେ ମୋ ଆଗରେ ମୁହୂର୍ତ୍ତେ କାଳ ବି ଠିଆହୋଇପାର ? ତୁମକୁ ମୁଁ ଏହିକ୍ଷଣି ଭସ୍ମ କରିଦେଇପାରେ ।'

ମାରାକଟ୍ ସ୍ଥିର ଦୃଷ୍ଟିରେ ତା'ର ସେଇ ଭୟଙ୍କର ଆଖି ଆଡ଼କୁ ଚାହିଁ ରହିଲେ । ଯେମିତି ମନେହେଲା ଦାନବ ହିଁ ଆଖି ଫେରାଇନେଲା । ମାରାକଟ୍ କହିଲେ, 'ମୋର ଯେଉଁ କ୍ଷମତା ଅଛି ସେଥିରେ ମୁଁ ତୁମକୁ ଭସ୍ମକରିଦେଇପାରେ । ଏ ପୃଥିବୀରେ ଯାହା କିଛି ସୁନ୍ଦର, ଯାହା କିଛି ଭଲ ତାକୁ ତୁମେ ନଷ୍ଟ କରିଛ । ତୁମେ ନିପାତ ହେଲେ ମଣିଷ ମନର ଭାରା କମିବ, ସୂର୍ଯ୍ୟର ଆଲୋକ ଆହୁରି ଉଜ୍ଜ୍ୱଳ ହେବ ।'

'ଇଏ କ'ଣ !–କିଏ ତୁମେ ? ଏ ତୁମେ କ'ଣ କହୁଛ ?' ଦାନବ ଥଙ୍ଗେଇହେଲା ।

'ତୁମେ କ'ଣ ଜାଣ ନାହିଁ ମୁଁ କ'ଣ କହୁଛି ? ଯେକୌଣସି ସ୍ତରରେ ହେଉ ନା କାହିଁକି ଭଲ ସର୍ବଦା ମନ୍ଦ ଅପେକ୍ଷା ବଳବାନ୍ । ତୁମେ ଏତେ କାଳ ଧରି ଯେଉଁ ସ୍ତରରେ ରହିଛ ଆପାତତଃ ମୁଁ ମଧ ସେହି ସ୍ତରରେ । ସେଇ ସ୍ତରରେ ଯାହା ଭଲ ତାରି ଶକ୍ତି ବର୍ତ୍ତମାନ ମୋ ମଧରେ । ପୁଣି କହୁଛି ନିପାତ ଯାଅ । ତୁମେ ନରକର ଜୀବ, ଓହ୍ଲାଇ ଯାଅ ସେହିଠାକୁ । ଯାଅ, ଚାଲିଯାଅ ! ନିପାତହୁଅ !'

କିଛି କ୍ଷଣ ପର୍ଯ୍ୟନ୍ତ ସେହି ଦୁଇ ସତ୍ତା–ମାନବ ଓ ଦାନବ–ପରସ୍ପର ଆଡ଼କୁ ତୀବ୍ର ଦୃଷ୍ଟିରେ ଅନାଇ ରହିଲେ ପଥର ମୂର୍ତ୍ତି ପରି । ତା' ପରେ ଦାନବ ହଠାତ୍ ତା'ର ଦୃଷ୍ଟି ଫେରାଇନେଲା । ଅତିଶୟ କ୍ରୋଧରେ ତା'ର ମୁହଁ ବିକୃତ ହେଲା । ଦୁଇ ହାତ ଶୂନ୍ୟକୁ ଟେକି ସେ ଯେମିତି କି ଅବଲମ୍ବନ ଖୋଜିଲା । ଚିତ୍କାରକରି କହିଲା–'ବୁଝିଲି, ଏ ଆଉ କେହି ନୁହେଁ–ଓଆର୍ଡ଼ା–ଏ ତୁମେ ! ଏ ତୁମର କାର୍ଯ୍ୟ ! ଓଃ ଓଆର୍ଡ଼ା ! ତୁମ ଉପରେ ମୋର ଅଭିଶାପ ରହିଲା–ମୋର ଅଭିଶାପ ରହିଲା ।'

ସେତେବେଳେ ଏକ ଅଲୌକିକ ବ୍ୟାପାର ଘଟିଲା । ଘୋରଦର୍ଶନର କଣ୍ଠସ୍ୱର ମିଳାଇଯିବା ମାତ୍ରେ ତା' ଦେହଟା କେମିତି ଝାପ୍‌ସା ଦିଶଲା, ମୁଣ୍ଡଟା ଛାତି ଉପରେ ନଇଁ ପଡ଼ିଲା, ଆଣ୍ଠୁ ଭାଙ୍ଗପଡ଼ିଲା, ଧୀରେ ଧୀରେ ତା'ର ଦେହଟା ତଳକୁ ହୋଇଗଲା । ଟିକିଏ ପରେ ଯେମିତି ଆଉ ତାକୁ ମଣିଷ ବୋଲି ଚିହ୍ନି ହେଲା ନାହିଁ । ଆଉ ଟିକିଏ ପରେ ଦେଖିଲି ସେ ନାହିଁ, ତା' ସ୍ଥାନରେ ପଡ଼ିଛି କେବଳ କଳା ଅସନା କାଦୁଅ ମେଞ୍ଚାଏ । ତା' ଦୁର୍ଗନ୍ଧରେ ପବନ ବିଷେଇଗଲା ।

ହଠାତ୍ ଗୋଟାଏ ଗୁଙ୍ଗାରିବା ଶବ୍ଦ ଶୁଣି ଅନାଇଁ ଦେଖିଲି ଡଃ ମାରାକଟ୍ ଟଳୁଛନ୍ତି– ଏଇକ୍ଷଣି ପଡ଼ିଯିବେ । ସ୍କାନ୍‌ଲନ୍ ଓ ମୁଁ ଦୌଡ଼ିଗଲୁ ମଞ୍ଚ ଉପରକୁ । ସେତେବେଳେ ସେ ଅସ୍ଫୁଟ ସ୍ୱରରେ କେବଳ କହୁଥାନ୍ତି–ଆମେ ଜିଣିଛୁ ! ଆମର ଜିତ୍ । ତା'ପରେ ସେ ଅଚେତ ହୋଇ ମଞ୍ଚ ଉପରେ ଲୋଟିପଡ଼ିଲେ ।

ଏହିପରି ଆଣ୍ଟଲାଣ୍ଟୀୟ ଉପନିବେଶ ତା'ର ସବୁଠାରୁ ଭୟଙ୍କର ବିପଦରୁ ଚିରଦିନ ଲାଗି ମୁକ୍ତହେଲା । ଡଃ ମାରାକଟ୍ କେଇଦିନ ପର୍ଯ୍ୟନ୍ତ କିଛି କହି ପାରିଲେ ନାହିଁ । ତା'ପରେ ଯେତେବେଳେ ସବୁ କଥା କହିଲେ, ସେତେବେଳେ ସେଇଟା ଏଡ଼େ ଅଦ୍ଭୁତ ଜଣାଗଲା ଯେ, ସମୁଦାୟ ଘଟନା ଆମ ଆଖି ଆଗରେ ଘଟିନଥିଲେ ତାଙ୍କ କଥାଗୁଡ଼ିକ ତାଙ୍କର ଅସୁସ୍ଥ ଅବସ୍ଥାର ପ୍ରଳାପ ବୋଲି ଧରି ନିଅନ୍ତୁ ସିନା ! ପ୍ରକାଶଥାଉକି, ପ୍ରଭୁ ଘୋରଦର୍ଶନର ସମ୍ମୁଖୀନ ହେବା ସମୟରେ ଡଃ ମାରାକଟ୍ଙ୍କ ମଧ୍ୟରେ ଯେଉଁ ଅଲୌକିକ ଶକ୍ତିର ଅଧିଷ୍ଠାନ ହୋଇଥିଲା, ତା'ର କାର୍ଯ୍ୟ ସରିବା ସଙ୍ଗେ ସଙ୍ଗେ ସେ ଶକ୍ତି ଅନ୍ତର୍ଦ୍ଧାନ ହୋଇଯାଇଥିଲା । ତା'ପରେ ସେ ପୁଣି ଆମ ଚିରପରିଚିତ ସେଇ ଶାନ୍ତି ସମାହିତ ବିଜ୍ଞାନୀ ।

ସେ କହିଲେ, 'ମୋର ପୁଣି ଏମିତି ହେଲା ! ମୁଁ–ନିରାଟ ବସ୍ତୁବାଦୀ –ଯାହା ପାଖରେ ଅଦୃଶ୍ୟରେ କୌଣସି ମୂଲ୍ୟ ନଥିଲା । ଜୀବନସାରା ଜଗତଟାକୁ ଯେମିତି ଭାବିଆସିଥିଲା ଶେଷକୁ ଏବେ ଦେଖୁଛି ସେତିକି ସବୁ ନୁହେଁ ।'

ସ୍କାନ୍‌ଲନ୍ କହିଲା–'ଭାବୁଚି ଆମେ ସମସ୍ତେ ପୁଣି ଚାଟଶାଳୀରେ ନାଁ ଲେଖାଇବୁ । ଯଦି କେବେ ଘରକୁ ଫେରିଯାଇପାରେ ସମସ୍ତଙ୍କୁ କହିଲା ଭଳିଆ ଗୋଟାଏ କିଛି ହେଲା ପରା !'

ମୁଁ କହିଲି, 'ଯେତେ କମ୍ କହିବ ସେତେ ଭଲ–ଯଦି ଆମେରିକାର ଅଉଲ୍ ନମ୍ବର ମିଛୁଆ ବୋଲି ନାମ କିଣିବାକୁ ନ ଚାହଁ । ଆଉ କେହି ଜଣେ ଆମକୁ ଏ ସବୁ କହିଥିଲେ ଆମେ କ'ଣ ବିଶ୍ୱାସ କରନ୍ତେ ?'

'ବୋଧେ ନୁହେଁ । କିନ୍ତୁ ଏଇ ଧରନ୍ତୁ ଡକ୍, ଆପଣ ଠିକ୍ ଦବାଇଟି ଦେଇଥିଲେ ସତରେ । ସେ ମୋଟା ଦୈତ୍ୟଟା ଯେ ପଡ଼ିଗଲା, ଦଶ ଗଣିବା ଭିତରେ ଆଉ ଉଠିଲା ନାଇଁ – ଏଡ଼େ ପରିଷ୍କାର ନକ୍-ଆଉଟ୍ ମୁଁ ଆଉ କେବେ ଦେଖିନଥିଲି ।'

ଡକ୍‌ଟର କହିଲେ, ଠିକ୍ କ'ଣ କେମିତି ହୋଇଥିଲା ତୁମକୁ କହୁଛି । ମୁଁ ତୁମ ପାଖରୁ ଚାଲିଆସିଲି ମୋ ଷଡ଼ିକୁ । ମୋ ମନରେ ଯତ୍‌ସାମାନ୍ୟ ଆଶା ଥିଲା । ତେବେ କୌଣସି ଏକ ସମୟରେ ମୁଁ ଇନ୍ଦ୍ରଜାଲ ଓ ଗୁପ୍ତବିଦ୍ୟା ବିଷୟରେ ପଢ଼ାପଢ଼ି କରିଥିଲି । ମୁଁ ଜାଣିଥିଲି ଭଲ ସବୁବେଳେ ମନ୍ଦକୁ ଜୟକରିପାରେ, ଯଦି କେବଳ ମନ୍ଦ ସହିତ ସମାନ ସ୍ତରକୁ ଉଠିପାରେ । ପ୍ରଭୁ ଘୋରଦର୍ଶନ ଆମ ଅପେକ୍ଷା ବହୁ ଉଚ୍ଚ ସ୍ତରରେ ଥିଲା । ତେଣୁ ମୁଁ ଆଉ କୌଣସି ଉପାୟ ନ ପାଇ କୌଚ ଉପରେ ବସିପଡ଼ି ପ୍ରାର୍ଥନା କରିବାକୁ ଆରମ୍ଭ କଲି । ହଁ, ମୁଁ–ଏଇ ପକ୍‌କା ବସ୍ତୁବାଦୀ–ପ୍ରାର୍ଥନା କରିବାକୁ ଲାଗିଲି–ସାହାଯ୍ୟ ପାଇଁ । ମଣିଷ ଶକ୍ତିର ଶେଷ ସୀମା ଯେତେବେଳେ ଆଉ ତାକୁ ବଳ ଦିଏ

ନାହିଁ ସେତେବେଳେ ତା ଚତୁର୍ଦ୍ଦିଗରେ ଘେରିରହିଥିବା ଅଖଣ୍ଡ ରହସ୍ୟମୟ ଯେଉଁ ଶୂନ୍ୟ ତାରି ଆଡ଼କୁ ଦୁଇଟି ଅସହାୟ ହାତ ବଢ଼ାଇ ସାହାଯ୍ୟ ଭିକ୍ଷା କରିବା ଛଡ଼ା ସେ ଆଉ କ'ଣ କରିପାରେ ?

'ହଠାତ୍ ଦେଖିଲି ବଖରା ଭିତରେ ମୁଁ ଏକା ନାହିଁ – ମୋ ସମ୍ମୁଖରେ ଉଭା ହୋଇଛନ୍ତି ଏକ ଦୀର୍ଘାକୃତି ପୁରୁଷ, ପ୍ରଭୁ ଘୋରଦର୍ଶନ ପରି ଈଷତ୍ ଘୋରବର୍ଣ୍ଣ, କିନ୍ତୁ ଦାଢ଼ିର ବହଳତା ଭିତରେ ମୁହଁଟି କାରୁଣ୍ୟ ଓ ସଭିଙ୍କ ମଙ୍ଗଳକାମନାରେ ଯେପରି ଆଲୋକମୟ ହୋଇ ରହିଛି । ଯେମିତି ସ୍ପଷ୍ଟ ଅନୁଭବ କଲା ପରି ଲାଗିଲା ଯେ ତାଙ୍କ ଭିତରେ ଯେଉଁ ଶକ୍ତି ରହିଛି ସେ ବି ସେଇ ଦାନବର ଶକ୍ତି ଭଳି, ମାତ୍ର ତାହା ପୁଣ୍ୟ ଶକ୍ତି । ମୋର ପାଟି ଫିଟିଲା ନାଇଁ, କେବଳ ବିସ୍ମୟରେ ତାଙ୍କ ମୁହଁ ଆଡ଼କୁ ଅନାଇଁ ରହିଲି । ମୋ ଭିତରୁ କିଏ ଯେମିତି କହିଲା–ଏଇ ହେଉଛନ୍ତି ସେଇ ମହାଜ୍ଞାନୀ ଆଟଲାଣ୍ଟୀୟଙ୍କର ଦେହବିମୁକ୍ତ ଆତ୍ମା ଯେ କି ସମଗ୍ର ଦେଶ ଓ ତା'ର ଶ୍ରେଷ୍ଠ ମଣିଷଙ୍କୁ ବଞ୍ଚାଇବାର ଉପାୟ ଖୋଜିଥିଲେ । ହଠାତ୍ ଯେପରି ଗୋଟାଏ ଆଶାର ବିଦ୍ୟୁତ୍ ଝଲକ୍ ଭଳି ଏ ସବୁ କଥା ଖେଳିଗଲା ମୋ ମନ ମଧ୍ୟରେ–ଏମିତି ସ୍ପଷ୍ଟ ଭାବରେ ଯେମିତି ସତେ ସେ ସବୁ ମୋତେ କହିଲେ । ମୋ ପାଖକୁ ଲାଗିଆସି ତାଙ୍କ ହାତ ଦିଓଟି ଥୋଇଲେ ମୋର ମୁଣ୍ଡ ଉପରେ । ସାଙ୍ଗେ ସାଙ୍ଗେ ମୁଁ ଅନୁଭବ କଲି ତାଙ୍କ ପୁଣ୍ୟର ଶକ୍ତି ଯେପରି ପବିତ୍ର ଅଗ୍ନିଶିଖା ଭଳି ମୋର ପ୍ରତି ଶିରାପ୍ରଶିରାରେ ବ୍ୟାପିଗଲା । ସେତେବେଳେ ଏ ପୃଥିବୀରେ ଆଉ କିଛି ହେଲେ ଅସମ୍ଭବ ବୋଲି ଭାବି ପାରିଲି ନାହିଁ । ସେହି ମୁହୂର୍ତ୍ତରେ ଶୁଣିପାରିଲି ଘଣ୍ଟା ବାଜୁଛି । ଚରମ କ୍ଷଣ ଉପସ୍ଥିତ । ମୁଁ କୌଚରୁ ଉଠିଲାମାତ୍ରକେ ସେହି ଆତ୍ମା ଅପରୂପ ହସଟିଏ ହସି ମୋତେ ଉତ୍ସାହ ଦେଇ ଅନ୍ତର୍ଦ୍ଧାନ ହୋଇଗଲେ । ତା'ପରେ ମୁଁ ତୁମ ସାଙ୍ଗରେ ଆସି ମିଶିଲି । ବାକିତକ ତ ତୁମେ ଜାଣିଛ ।'

ମୁଁ କହିଲି, 'ଆପଣ ଯେମିତି ଅଲୌକିକ ଭାବରେ ସମସ୍ତଙ୍କୁ ରକ୍ଷାକଲେ ସେଥିରେ ଇଚ୍ଛାକଲେ ଆପଣ ଜଣେ ଦେବତା ହୋଇ ଏଇଠି ରହିପାରନ୍ତି ।'

ସ୍କାନ୍‌ଲନ୍ ଟିକିଏ ମୁହଁ ଫୁଲାଇ କହିଲା, 'ଆପଣ ତ ବେଶ୍ ପାରପାଇଗଲେ, ଡକ୍ । ଆପଣ କ'ଣ କରୁଚନ୍ତି ନ କରୁଚନ୍ତି ତା' ସେ ମହାପ୍ରଭୁଟି ଟେର ନ ପାଇଲେ କେମିତି ? ମୋ ବେଳକୁ ତ ମୋ ଉପରେ ହାମଲା କରିବାକୁ ତା'ର ଟିକେ ବି ଡେରିହେଉନଥିଲା ?'

ଡକ୍ ଟିକିଏ ଭାବି କହିଲେ, 'ତା ହୁଏତ ଏଇଥିପାଇଁ ଯେ, ତୁମେ ଥିଲ ବସ୍ତୁ ସ୍ତରରେ, ଆଉ ମୁଁ ସେ ସମୟଟିକ ପାଇଥିଲି ଆତ୍ମାର ସ୍ତରରେ । ଏଇଭଳି ଗୋଟାଏ ଗୋଟାଏ ବ୍ୟାପାରରୁ ଆମର ଶିକ୍ଷା ହୋଇଯାଏ । ମୁଁ ଯେଉଁ ଶିକ୍ଷା ପାଇଲି ତାହା ମୋ ଜୀବନକୁ ଯେପରି ସାର୍ଥକ କରେ ।'

ଏହାହିଁ ହେଲା ଆମର ଚରମ ଅଭିଜ୍ଞତାର ଉପସଂହାର । ଏହାର ଅଳ୍ପଦିନ ପରେ ଉପର ପୃଥିବୀକୁ ଆମ ସମ୍ବାଦ ପଠାଇବା କଳ୍ପନା ଆମ ମୁଣ୍ଡକୁ ଆସେ । ଅବଶେଷରେ ଲାଘବଜାନ ଗ୍ୟାସ୍ ଭର୍ତ୍ତିହୋଇଥିବା କାଚଗୋଲକ ସାହାଯ୍ୟରେ ଆମେ ଉପରକୁ ଆସି ପହଞ୍ଚିଲୁ ତା ତ ସମସ୍ତଙ୍କୁ ଜଣା । ଡଃ ମାରାକଟ୍ ବେଳେ ବେଳେ ସେଠାକୁ ଫେରିଯିବା କଥା ଉଠାନ୍ତି–ମତ୍ସ୍ୟବିଦ୍ୟାର କ'ଣ ଗୋଟିଏ ବିଷୟରେ ସେ ଆଉ ଟିକିଏ ବିଶଦ ତଥ୍ୟ ଦରକାର କରନ୍ତି । ଶୁଣାଯାଏ ସ୍କାନ୍‌ଲନ୍ ଫିଲାଡେଲଫିଆରେ ଥିବା ତା'ର ସଖୀ ସେଇ ଜାହାଜୀ ଝିଅଟିକୁ ବିଭାହୋଇଛି । ସେ ବର୍ତ୍ତମାନ ମେରିବ୍ୟାଙ୍କ୍‌ସ୍‌ର ଓ୍ୱାର୍କସ୍ ମେନେଜର୍ । ଆଉ ମୋ କଥା ଯଦି କହିବେ–ତା'ହେଲେ ରତ୍ନାକର ମୋତେ ଯେଉଁ ଅମୂଲ୍ୟ ରତ୍ନ ଦେଇଚ ତାହା ବ୍ୟତୀତ ମୁଁ ଆଉ କିଛି ଚାହୁଁନାହିଁ ।

——